

# ଜହ୍ନମାମୁଁ

ଫେବୃଆରି ୧୯୮୮



## ବିଷୟ-ସୂଚୀ






ପ୍ରତି ସଂଖ୍ୟା : ୨-୫୦

ବାର୍ଷିକ ମୂଲ୍ୟ : ୩୦-୦୦

No share prices,
no political fortunes, yet...

# Over 40% of Heritage readers are professionals or executives, 61% from households with a professional / executive as the chief wage earner. Half hold a postgraduate degree or a professional diploma.

– from an IMRB survey conducted in Oct. 1986




It's an unusual magazine. It has a vision for today and tomorrow.

It features ancient cities and contemporary fiction, culture and scientific developments, instead of filmstar interviews and political gossip. And it has found a growing readership, an IMRB survey reveals. Professionals, executives and their families are reading The Heritage in depth – 40% from cover to cover, 42% more than half the magazine.

More than 80% of The Heritage readers are reading an issue more than once.

And over 90% are slowly building their own Heritage collection.

Isn't it time you discovered why?

## THE HERITAGE

So much in store

# ଜହ୍ନମାମୁଁ

ସମ୍ପାଦକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍ଡୀ

"କନକ ଉପତ୍ୟକାର କାହାଣୀ"ରେ ରଜୁ ବାଧ ହୋଇ ତା' ଆବିଷ୍କୃତ ସୁନା ପ୍ରତିମା ପ୍ରତି ରାଜାଙ୍କ ଦୃଷ୍ଟି ଆକର୍ଷଣ କରୁଛି । ନହେଲେ, ତା' ଅନୁପସ୍ଥିତିରେ ରାଜା ହଠାତ୍ ତା'ର ସନ୍ଧାନ ପାଇ ତାକୁ ଠେଲାଇ ଆଣି ଯାହା ମନ ଚାହା ନ କରିବେ ବୋଲି କିଏ କହିବ ? ରଜୁ ପାଖରେ ଏହାହିଁ ଥିଲା ସମସ୍ୟା ।

**ଅମରବାଣୀ**

ଗିରୟୋ ଗୁରବସ୍ତେଭ୍ୟୋର୍ବୀ ଗୁର୍ବୀ, ତତୋପି ଜଗଦଣ୍ଡମ୍ ।
ତସ୍ମାଦପ୍ୟତି ଗୁରବଃ, ପ୍ରଲୟେପ୍ୟଚଲା ମହାତ୍ମାନଃ ॥

[ପର୍ବତ ମହାନ, ପର୍ବତଠୁଁ ମହତ୍ ପୃଥିବୀ, ପୃଥିବୀଠୁଁ ମହତ୍ ବିଶ୍ୱଜଗତ୍ । କିନ୍ତୁ ପ୍ରଳୟକାଳରେ ବି ଯେଉଁ ବ୍ୟକ୍ତି ଅବିଚଳ ରହିପାରେ, ସିଏ ତାହାଠୁଁ ଅଧିକ ମହତ୍ ।]




ବର୍ଷ : ୨୧ ଫେବୃଆରୀ ୧୯୮୮ ଅଙ୍କ : ୮

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦

## ଜମିବ ଭଲ ଗପ୍ପର ଆସର
## ଲିପ୍‌ଟନ ବିସ୍କୁଟର ନାହିଁ ପଟାନ୍ତର

ର ଆସର ଏବେ ଜମି ଉଠିବ—ନୂଆ ଲିପ୍‌ଟନ
ସ୍କୁଟ ସାଙ୍ଗରେ । ସ୍ୱାଦରେ ଭରା, ହାଲୁକା
କା ଓ ମୁଡମୁଡ଼ିଆ । ସତରେ
ାଭ ସମ୍ଭାଳିବା କଷ୍ଟକର ।
ଆଉ ଲିପ୍‌ଟନ
ଟ—ବାଃ !
ଥାଏ ଭାରି
ଆ ।




ନୂଆ

**ଲିପ୍‌ଟନ ଥିନ ଆ୍ୟାରାରୁଟ ଓ ମାରୀ**

ଲିପ୍‌ଟନ

CLARION CLIT.AA.

## ଜହ୍ନମାମୁଁ ସମ୍ବାଦ-ବିଚିତ୍ରା

### ସବୁଠାରୁ ପୁରୁଣା ଅଣ୍ଡା



ପଶ୍ଚିମ କୋଲୋରାଡୋଠିଁ ୧୪୫୦ ଲକ୍ଷ ବର୍ଷ ତଳର ପ୍ରାଗୈତିହାସିକ ଡିନୋସର୍ ଅଣ୍ଡା ମିଳିଛି । ପାଖରେ କେଉଁଠି ମା ଡିନୋସର୍‌ର ଅସ୍ଥି ମିଳିବ ବୋଲି ବୈଜ୍ଞାନିକମାନେ ଆଶା କରୁଛନ୍ତି । ସେ ଅଣ୍ଡା ଦେଖି ସେମାନେ ଭାବୁଛନ୍ତି, ପ୍ରତି ଅଣ୍ଡା ୨୦ ସେଣ୍ଟିମିଟର୍ ଦୀର୍ଘ ଓ ୯ ସେଣ୍ଟିମିଟର୍ ପରିଧି ବିଶିଷ୍ଟ ହୋଇଥିବ ।

### ବାଳକର ଅଦ୍ଭୁତ ଜ୍ଞାନ



ସାଉଦିଆରବର ହାମ୍‌ଦାନ ଆସିର ନାମକ ଗୋଟିଏ ଦଶବର୍ଷ ବୟସ୍କ ବାଳକ ଭୂମିରେ କେଉଁଠି ଖୋଳିଲେ ପାଣି ମିଳିବ, ସେକଥା କହି ଦେଇ ପାରୁଛି । ତା' ବାପା କୂଅ ଖୋଳିବା ପାଇଁ ସ୍ଥାନ ଖୋଜିବା ବେଳେ ପିଲାଟିର ଦକ୍ଷତା ପ୍ରଥମେ ଜଣାପଡ଼ିଲା । ତା'ପରେ ସେ ଶହେ ପଚିଶଟି କୂଅ ପାଇଁ ସ୍ଥାନ ନିରୂପଣ କରିପାରିଛି ।

### ତରୁଣ ସୂର୍ଯ୍ୟ!




ସୂର୍ଯ୍ୟଙ୍କ ବୟସ ଷାଠିଏ ଲକ୍ଷ ବର୍ଷ ହେଲାଣି ବୋଲି ଧରାଯାଉଥିଲା । କିନ୍ତୁ ବଦନ୍‌ଲାଲ୍ ଶ୍ରୀକାନ୍ତନ୍ ନାମକ ଜଣେ ଭାରତୀୟ ବୈଜ୍ଞାନିକ ନିକଟରେ ଗୋଟିଏ ସୌର ବିଜ୍ଞାନୀ ସମ୍ମିଳନରେ କହିଛନ୍ତି କି ସୂର୍ଯ୍ୟ ବାସ୍ତବିକ ସେତେ ପୁରୁଣା ନୁହେଁ । ସୂର୍ଯ୍ୟଙ୍କ ବୟସ ଚାରିଲକ୍ଷ ପଚିଶ ହଜାର ବର୍ଷ ।

### ଏକପାଦ ପର୍ଯ୍ୟଟକ



ବ୍ରିଟିଶ୍ ସାମରିକ ବାହିନୀରେ ଥିବା ଟ୍ରିଷ୍ଟନ୍ ଜୋନ୍ସ ଦ୍ୱିତୀୟ ମହାଯୁଦ୍ଧରେ ତାଙ୍କର ବାମ ଗୋଡ଼ଟି ହରାଇଥିଲେ । ସେ ଜଳଯାତ୍ରା ପାଇଁ ଅନୁପଯୁକ୍ତ ବିବେଚିତ ହେଲେ । କିନ୍ତୁ ଗତ ୩୪ ବର୍ଷ ଭିତରେ ସେ କୋଡ଼ିଏ ଥର ଆଟଲାଣ୍ଟିକ ମହାସାଗରରେ ଏକାକୀ ନୌକା ଚଳାଇ ଜଳଯାତ୍ରା କରିଛନ୍ତି । ସେ ତିନିଥର ପୃଥିବୀ

ପ୍ରାଚୀନ ସାହିତ୍ୟର ରତ୍ନ :

# ଦୁର୍ଗମ

ଅସୁର ଦୁର୍ଗମ, ଦେବତା ଓ ମୁନି ଋଷିମାନଙ୍କୁ ହଇରାଣ କରିବା ନିମନ୍ତେ ଗୋଟିଏ ଅଭିନବ ଉପାୟ ପାଞ୍ଚିଥିଲା । ସେ ଜାଣିଥିଲା ଯେ ଯଜ୍ଞ ଓ ଅନ୍ୟାନ୍ୟ ପୁଣ୍ୟକାର୍ଯ୍ୟମାନ ବେଦ ଅନୁସରଣ କରି ହୋଇଥାଏ । ସେ ଯଦି ବେଦ ଚୋରି କରିନେଇ ପାରିବ, ତେବେ ମଣିଷ ଓ ଦେବତାଙ୍କ ଭିତରେ ଥିବା ସମ୍ପର୍କ ଛିନ୍ନ ହୋଇଯିବ ।

ସେ ଖୁବ କଠୋର ତପସ୍ୟା କରି ଏମିତି ଶକ୍ତି ଅର୍ଜନ କଲା ଯେ ତାହାଦ୍ୱାରା ସେ ବେଦ ଚୋରିକରି ନେଲା ଓ ବ୍ରାହ୍ମଣମାନେ ବେଦର ସ୍ତୋତ୍ରମାନ ପାଶୋରି ପକାଇଲେ । ସେମାନେ କୌଣସି ଅନୁଷ୍ଠାନ କରି ନପାରି ବିଷାଦଗ୍ରସ୍ତ ହେଲେ ଓ ଏପରିକି ବଞ୍ଚି ରହିବା ଦିଗରେ ମଧ୍ୟ ସେମାନଙ୍କ ଆଗ୍ରହ ରହିଲା ନାହିଁ ।

ତା' ଶକ୍ତି ଯୋଗୁ ଋତୁଚକ୍ର କାମ କଲାନାହିଁ । ପୃଥିବୀ ହେଲା ଶୁଷ୍କ । ଲୋକେ ମୃତପ୍ରାୟ ହୋଇଗଲେ । ଋଷିମାନେ ଭୀଷଣ ଚିନ୍ତିତ ହୋଇ ଅବଶେଷରେ ହିମାଳୟ ଯାଇ ଦୁର୍ଗାମାତାଙ୍କୁ ଗୁହାରି କଲେ ସେମାନଙ୍କଠୁଁ ପୃଥିବୀର ଦୁର୍ଦ୍ଦଶା କଥା ଶୁଣି ମାତାଙ୍କ ନୟନ ସଜଳ ହୋଇ ଉଠିଲା । ତାଙ୍କ ନୟନରେ ଅଶ୍ରୁ ଦେଖାଦେବା ମାତ୍ରେ ପୃଥିବୀ ଉପରୁ ଅସୁରର ପ୍ରଭାବ ତୁଟିଗଲା । ଆକାଶରେ ମେଘ ଆସିଲା, ବର୍ଷା ହେଲା, ଋତୁଚକ୍ର ପୁଣି କାମ କଲା ।

ଅସୁର ଦୁର୍ଗମ ରାଗିଯାଇ ଦୁର୍ଗାଙ୍କ ପାଖକୁ ଦୌଡ଼ିଲା । ତତ୍‌କ୍ଷଣାତ୍ ଦୁର୍ଗାଙ୍କ ଦେହରୁ ଅସଂଖ୍ୟ ଶକ୍ତି ବାହାରି ଆସି ତାକୁ ମାରିଦେଲେ । ଅସୁରର ମୃତ୍ୟୁ ସଙ୍ଗେ ସଙ୍ଗେ ବେଦ ପୁଣି ପୃଥିବୀକୁ ଫେରି ଆସିଲା ।





# କିଏ ଚୋର?

ଲଳିତପୁର ଗାଁରେ ଥିଲେ ରଘୁସିଂହ । ତାଙ୍କର ଗୋଟିଏ ବୋଲି ଝିଅ । ନାମ ସୁପ୍ରିୟା । ଝିଅଟି ଅତି ସାନ ହୋଇଥିଲା ବେଳେ ରଘୁସିଂହଙ୍କର ସ୍ତ୍ରୀ ପରଲୋକଗମନ କଲେ । ସୁପ୍ରିୟାକୁ ଅତି ଯତ୍ନ କରି ବଢ଼ାଇଥିଲେ ରଘୁସିଂହ ।

ସୁପ୍ରିୟାର ସ୍ୱଭାବ ଏପରି ଯେ ସେ ମାଛିକୁ ମ କହିବ ନାହିଁ, ତେଣେ କିଛି ଅନ୍ୟାୟ କରିବ ନାହିଁ କି ସହିବ ନାହିଁ । ସେ ଯେତିକି ସତ୍, ସେତିକି ସାହସୀ । ଘର ପାଖରେ ଥା'ନ୍ତି ଜଣେ ସମ୍ପର୍କୀୟା ମାଉସୀ । ତାଙ୍କଠାରୁ ସୁପ୍ରିୟା ଭଲ କରି ରୋଷେଇବାସ କରିବା ଶିଖି ନେଇଥାଏ । ତା' ରାନ୍ଧଣା ଖାଇ ରଘୁସିଂହଙ୍କର ପେଟ ପୂରିବା ସାଙ୍ଗକୁ ମନ ବି ପୂରୁଥାଏ ।

ସୁପ୍ରିୟାର ବାହାଘର ବୟସ ହୋଇଗଲା । ବରଟିର ସ୍ୱଭାବ ଭଲ ହୋଇଥିବ, ଏତିକି ଥିଲା ରଘୁସିଂହଙ୍କର ଅଭିଳାଷ । ସେଥିପାଇଁ ସେ ମନଦେଇ ଆଖପାଖ ଅଞ୍ଚଳରେ ବର ଖୋଜା-ଖୋଜି ଆରମ୍ଭ କଲେ ।

ଦିନେ ହୁବୁଲି ଗାଁର ଜଣେ ବରପିତା କନ୍ୟା ଦେଖିବାକୁ ଆସିବେ ବୋଲି ଜଣେ ପଡ଼ୋଶୀ ଖବର ଦେଲେ । ବରପିତା ଆସି କନ୍ୟା ଦେଖି ବହୁତ ଖୁସି ହେଲେ ବୋଲି ମନେ ହେଲା । କିନ୍ତୁ ସଙ୍ଗେ ସଙ୍ଗେ ସେ କୌଣସି ଜବାବ୍ ନ ଦେଇ ଦିନକ ପରେ ଖବର ଦେବେ ବୋଲି କହିଗଲେ ।

ସେମାନେ ଚାଲିଯିବା ପରେ ରଘୁସିଂହ ହସି ହସି ସୁପ୍ରିୟାକୁ କହିଲେ, "ଝିଅ, ଯାହା ମନେହୁଏ ସେମାନେ ହଁ କରିବେ । ତୁ ମୋ ଘର ଛାଡ଼ି ଚାଲିଯିବା ଆଗରୁ ମୋତେ ରୋଷେଇବାସ ଟିକିଏ ଶିଖାଇ ଦେ । ନହେଲେ ମୁଁ ରାନ୍ଧି ଖାଇବି କିପରି ?"

ଅଭିଯୋଗ ଓ ଅପରାଧ ଏକ ନୁହେଁ



ରଘୁସିଂହ ସିନା ଥଟ୍ଟାରେ ଏକଥା କହନ୍ତି, ସୁପ୍ରିୟା କିନ୍ତୁ ସେଥିରେ ଦୁଃଖ ପାଏ।

ସେତିକିବେଳେ ରଘୁସିଂହଙ୍କର ଆଉ ଜଣେ ବିଶିଷ୍ଟ ବନ୍ଧୁ ଆସି କହିଲେ, "ରଘୁ, ସୁପ୍ରିୟା ପାଇଁ ଗୋଟିଏ ଭଲ ବର ମୋ ମନରେ ଅଛି। ତା' ନାମ ପ୍ରଭାକର। ସେ ଆଜି ଆମ ଘରକୁ ଆସିଛି। ତା' ଘର ମହୁଙ୍ଗର ଗାଁରେ। ଯଦି କହିବୁ, ତାକୁ ନେଇ ଆସିବି।"

"ହୁବୁଳରୁ ଜଣେ ବିଶିଷ୍ଟ ବ୍ୟକ୍ତି ଆସି କନ୍ୟା ଦେଖିଯାଇଛନ୍ତି। ସେ କିଛି କହି ନାହାନ୍ତି। ତାଙ୍କ କହିବାକୁ ଅପେକ୍ଷା କରିଥିଲି।" ରଘୁସିଂହ କହିଲେ।

"ସେ ତ ହଁ ଭରି ନାହାନ୍ତି! ଏଣେ ଆମେ ଅନ୍ୟତ୍ର ଦେଖାଶୁଣା କରିବାରେ ତାହାର କ'ଣ ଆପତ୍ତି ଥାଇପାରେ?" ବନ୍ଧୁ କହିଲେ। ରଘୁସିଂହ ସେଇଠୁ ପ୍ରଭାକରକୁ ନେଇ ଆସିବାକୁ କହିଲେ।

ପ୍ରଭାକର ଆସିଲା। ପିଲାଟି ବହୁତ ଭଲ ବୋଲି ଜଣାଗଲା। ସଂସାରରେ ତା'ର କେହି ନଥିଲେ। ବାପା ମା ଘରଟିଏ, କିଛି ଜମିଜମା ଓ କେତୋଟି ମଇଁଷି ଛାଡ଼ି ଯାଇଥିଲେ। ସେ ସ୍ୱଚ୍ଛନ୍ଦରେ ଚଳୁଥିଲା।

ପ୍ରଭାକର ବିଦାୟ ନେବା ପରେ ରଘୁସିଂହଙ୍କ ବନ୍ଧୁ ତାଙ୍କୁ ପଚାରିଲେ, "କ'ଣ ଭାବୁଛ? ପାତ୍ର ପସନ୍ଦ? କଥା ପକ୍କା କରିଦେବା?"

ରଘୁସିଂହ ଝିଅଆଡ଼େ ଅନାଇଲେ ଓ ବୁଝିଲେ ଯେ ଝିଅ ପ୍ରଭାକରକୁ ପସନ୍ଦ କରୁଛି। ତେବେ ସେ କହିଲେ, "ମୋତେ ଦିନଟିଏ ସମୟ ଦେବନାହିଁ?"

"ହଁ, ହଁ, ତମେ ଆଗାମୀ କାଲି ସକାଳେ କହିଲେ ଚଳିବ। ପ୍ରଭାକର ଆଜି ମହୁଙ୍ଗର ଚାଲିଯିବ। ତେବେ, ଆମେ ଯାଇ ତାକୁ ପରେ ଖବର ଦେବା।" ବନ୍ଧୁ କହିଲେ।

ରଘୁସିଂହ କିଛି ସମୟ ପରେ ଝିଅକୁ କହିଲେ, "ଝିଅ, ମୁଁ ଟିକିଏ ହୁବୁଳି ଯାଇ ଖବର ନେଇ ଆସେଁ। ଦୁଇଜଣଯାକ ବର ଜଣକ ପାଇଁ ଆଉଜଣେ ହାତଛଡ଼ା ହୋଇଯିବା ଠିକ୍ ହେବ ନାହିଁ।"



ରଘୁସିଂହ ବାହାରି ଯିବାର ଅଳ୍ପ ସମୟ ଉତ୍ତାରୁ ଜଣେ ଅପରିଚିତ ଲୋକ ଆସି ଡାକି-ମାରିଲା। ସୁପ୍ରିୟା କହିଲା, "ଆପଣ ବୋଧ-ହୁଏ ବାପାଙ୍କୁ ଖୋଜୁଛନ୍ତି। ସେ ଘରେ ନାହାନ୍ତି।"

ଲୋକଟି କହିଲା, "ଯଦି ନାହାନ୍ତି, ତେବେ ମୋର ଯେଉଁ ଖବର ଦେବା କଥା ଦେଇଯାଏଁ। ଶୁଣିଲି ତମ ବାହାଘର ପ୍ରସ୍ତାବ ମଧୁଝର ଗାଁର ପ୍ରଭାକର ସହ ପଡ଼ୁଛି। ପ୍ରଭାକର ଦୁଇବର୍ଷ କାଳ ଚୋରି ଅଭିଯୋଗରେ କାରାଗାରରେ ଥିଲା। ଶୁଭେଚ୍ଛୁ ଭାବରେ ଏତକ ଜଣାଇ ଦେଲି।"

ହଠାତ୍ ଏ ଖବର ପାଇ ସୁପ୍ରିୟା କ'ଣ କହିବ ଭାବିପାରିଲା ନାହିଁ। ସେ ଲୋକଟିର ପରିଚୟ ପଚାରିବ ବୋଲି ଦ୍ୱାର ପାଖକୁ ଉଠିଗଲା। ଲୋକଟି ସେତେବେଳକୁ ଚାଲି-ଯିବାକୁ ଉଦ୍ୟତ ହେଲା। ସୁପ୍ରିୟା ଉପରେ ଆଖି ପଡ଼ିଯିବାରୁ ସେ ଖାଲି ଥରେ ହସିଦେଲା ଓ କହିଲା, "ମୋର ଆଉ କିଛି କହିବାର ନାହିଁ।"

ଲୋକଟି ଏହା କହି ଚାଲିଗଲା। ସୁପ୍ରିୟାର ମୁଣ୍ଡ ବୁଲାଇଦେଲା। ସେ ଥିଲା ବେଶ୍ ତେଜୀ ଝିଅ। ପ୍ରଭାକର ବିଷୟରେ ଏହା ସତ ନା ମିଛ? ସେ ଏକଥା ନିଜେ ନିରୂପଣ କରିବାକୁ ଠିକ୍ କଲା। ମଧୁଝର ବେଶୀ ଦୂର ନୁହେଁ। ସେ ଘରେ ତାଲା ଦେଇ ବାହାରିଗଲା।

ପ୍ରଭାକରର ଘର ଗାଁ ବାହାରେ ନିଛାଟିଆ ସ୍ଥାନରେ। ସେ ଅକ୍ଲେଶରେ ସେଠାରେ ପହଞ୍ଚିଗଲା। ପ୍ରଭାକର ତାକୁ ଦେଖି ହସି ଘର ଭିତରକୁ ପାଛୋଟି ନେଲା।

"ଆପଣ ଚୋରି ଅପରାଧରେ କାରାଗା ଯାଇଥିଲେ?" ସୁପ୍ରିୟା ବିନା ଭୂମିକାରେ ପ୍ରଶ୍ନ କଲା।

"ଚୋରି ଅଭିଯୋଗରେ ଯାଇଥିଲି, ଚୋ ଅପରାଧରେ ନୁହେଁ। ବସ କହୁଛି।" ପ୍ରଭାକ ଚୌକି ଦେଖାଇ ଦେଲା ଓ ସୁପ୍ରିୟା ଗମ୍ଭୀ ହୋଇ ବସି ପଡ଼ିବା ମାତ୍ରେ ସବୁ ଗପିଗଲା।

ପିଲାବେଳଠୁଁ ସେ ବାପା ମା' ହରାଇଥିଲା। ଜେଜେମା ତାକୁ ପାଳିପୋ




ବନ୍ଧ କରିଥିଲେ । ଦିନେ ସେ କୌଣସି କାମରେ ସହରକୁ ଯାଉଥିଲା ଗୋଟିଏ ଗାଡ଼ି ଭଡ଼ା କରି । ଅଧା ବାଟରେ ବୁଢ଼ୀଟିଏ ଗାଡ଼ି ଅଟକାଇ କହିଲା, "ପୁଅ, ମୋ ନାତି ସହରରେ ଥାଏ । ତା' ପାଇଁ କିଛି ମିଠେଇ ତିଆରି କରିଥିଲି । ତା' ଜେଜେବାପା ମିଠେଇତକ ଧରି ଆଜି ସହରକୁ ଯିବାର ଥିଲା । କିନ୍ତୁ ସେ ବେମାର ପଡ଼ି ଯାଇଛନ୍ତି । ଗାଡି ଯେମିତି ସହରରେ ପଶିବ, ସେମିତି ଗୋଟାଏ ମନ୍ଦିର ପଡ଼ିବ । ସେଇଠି ହଳଦିଆ କାମିଜ ପିନ୍ଧି ପିଲାଟାଏ ଠିଆ ହୋଇଥିବ । ତାକୁ ଏ ଡବାଟା ଦେଇଦେବୁ । ତୋର ଭଲ ହେବ ।"

ପ୍ରଭାକର ସେଥିରେ ବା କାହିଁକି ଆପତ୍ତି କରନ୍ତା ? ସେ ଯାଇ ମନ୍ଦିର ପାଖରେ ଗାଡ଼ି ଅଟକାଇ ଓହ୍ଲାଇଲା । ସେ ଦେଖିଲା, କାହିଁକି କେଜାଣି, ହଳଦିଆ କାମିଜ ପିନ୍ଧିଥିବା ପିଲାଟାଏ ଦୌଡ଼ି ପଳାଉଛି ! ଏଣେ ଦୁଇଜଣ ସିପାହୀ ଆସି ତାକୁ ଧରି ପକାଇ ପଚାରିଲେ, "କାହାକୁ ଖୋଜୁଛୁ ?"

"ଗୋଟାଏ ପିଲା ପାଇଁ ମିଠେଇ ଆଣିଥିଲି । ତାକୁ ଖୋଜୁଛି ।" ପ୍ରଭାକର କହିଲା ।

"ଦେଖିବା କପରି ମିଠେଇ !" ଏହା କହି ସିପାହୀମାନେ ଡ଼ବା ଖୋଲିଲେ । ଭିତରେ ଅବଶ୍ୟ ମିଠେଇ ଥିଲା । କିନ୍ତୁ ମିଠେଇ ତଳେ ଥିଲା କେତୋଟି ସୁନା ଅଳଙ୍କାର ।

"ବେଶ୍ ! ଆମେ ଆଗରୁ ସନ୍ଧାନ ପାଇ ଏହି ଚକ୍ର ଅପେକ୍ଷାରେ ରହିଥିଲୁଁ ।" ସିପାହୀମାନେ କହିଲେ ଓ ତାକୁ ସେମାନଙ୍କ ହାକିମ ପାଖକୁ ନେଇଗଲେ । କ'ଣ ବିଚାର ହେଲା, କାହା ଘରୁ ଚୋରି ହୋଇଥିଲା, ସେସବୁ ପ୍ରଭାକର ବୁଝିପାରିଲା ନାହିଁ । କିନ୍ତୁ ତାକୁ ଦୁଇବର୍ଷ କାରାଦଣ୍ଡ ଭୋଗିବାକୁ ହେଲା । ତେବେ କାରାବାସ ଭିତରେ ସେ ଜଣେ ଅଭିଜ୍ଞ ଲୋକଠୁଁ ନାନା ପ୍ରକାର କୃଷି ପ୍ରଣାଳୀ ଶିଖିଲା । ଦଣ୍ଡିତ ବ୍ୟକ୍ତିମାନଙ୍କୁ କାମ କରିବାକୁ ପଡୁଥାଏ । ତାକୁ କ୍ଷେତରେ କାମ କରିବାକୁ ହେଲା । ସେ ତା'ର ସେ ଶୁଭେଚ୍ଛୁ ବ୍ୟକ୍ତିଠାରୁ ପ୍ରତ୍ୟକ୍ଷ ଜ୍ଞାନ ଲାଭ କଲା ।

ପ୍ରଭାକର ତା' କାହାଣୀ ଶେଷ କଲା ଓ ହସିଲା ।

“ଆପଣ ଆପଣଙ୍କ କାରାବାସ କଥା ଆମ ଘରେ ନ କହିଲେ କାହିଁକି ?”

“କହିବି କହିବି ବୋଲି ସଙ୍କୋଚରେ କହି ପାରିଲି ନାହିଁ । ସେଇଥିପାଇଁ ତ ସେ ଲୋକଟିକୁ ପଠାଇ କଥାଟି କୁହାଇଦେଲି । ପରେ ଯେପରି ଏ ପାଇଁ ତୁମକୁ ବା ତୁମ ବାପାଙ୍କୁ ଅନୁତାପ କରିବାକୁ ନ ହୁଏ !” ପ୍ରଭାକର କହିଲା ।

“ଓଃ, ସେ ଲୋକକୁ ଆପଣ ପଠାଇଥିଲେ ?” ଏଥର ସୁପ୍ରିୟା ମଧ୍ୟ ହସିଲା ।

ସୁପ୍ରିୟା ବିଦାୟ ନେଇ ଆସି ଘରେ ପହଞ୍ଚିବାର ଅଳ୍ପ ସମୟ ପରେ ରଘୁସିଂହ ଆସି କହିଲେ, “ଆରେ ଝିଅ, ସେ ଦୁବୁଳ୍ ବର ବିଷୟରେ କଥା ଆଜି ପକା ହୋଇ ଯାଇଥାନ୍ତା । କିନ୍ତୁ ସେମାନେ କିଛି ଯୌତୁକ ଚାହାନ୍ତି । ମୁଁ କହିଛି ଆଗାମୀ କାଲି କହିବ । ଭାବୁଛି ଏ ଘର ବିକିଦେବା । ତୁ ଚାଲିଯିବା ପରେ ମୋର ଆଉ ଘର କ'ଣ ଦରକାର ? କେଉଁଠି ହେଲେ ଚାଲିଯିବି ।”

“ବାପା ! ସେକଥା ଅସମ୍ଭବ । ତୁମେ ପ୍ରଭାକର ସହ କଥା ପକା କର ।” ସୁପ୍ରିୟା ଦୃଢ଼ କଣ୍ଠରେ କହିଲା ।

ରଘୁସିଂହ ଟିକିଏ ସଙ୍କୋଚ କରି କହିଲେ, “ଝିଅ, ପ୍ରଭାକର ଭଲ ପିଲା । ହେଲେ ସେ ଥରେ କାରାଗାର ଯାଇଥିଲା···।”

“ବାପା, ମୁଁ ଜାଣେ ।” ଏହା କହି ସୁପ୍ରିୟା ସବୁ ଗପିଲା ।

ରଘୁସିଂହ ଖୁସି ହୋଇ କହିଲେ, “ବେଶ୍ କଥା, ତୋ ମତରେ ମୋ ମତ !”

“ବାପା, ପ୍ରଭାକର ଚୋର ନା ଯିଏ ଯୌତୁକ ମାଗୁଛି ସିଏ ଚୋର ?” ସୁପ୍ରିୟା ପଚାରିଲା ।

ରଘୁସିଂହ ହସି କହିଲେ, “ବାସ୍ତବିକ୍, ଭାବିବାର କଥା ।”





# ଅଦୃଶ୍ୟ ସଞ୍ଚୟ

ଶ୍ରୀପୁର ସହରରେ ଥିଲେ ଜଣେ ବିଶିଷ୍ଟ ଅଳଙ୍କାର ବ୍ୟବସାୟୀ । ନାମ ଧନଗୁପ୍ତ । ତାଙ୍କ ପାଖରେ କାମ କରୁଥିଲା ଶ୍ରୀଧର । ସେଭଳି ସଚ୍ଚୋଟ ସହକାରୀ ପାଇବା ସହଜ ନୁହେଁ । ସେ ଯେପରି ନିଷ୍ଠାବାନ୍, ସେହିପରି ସତ୍ । ତା' ଉପରେ ଧନଗୁପ୍ତ ପୁରାପୁରି ନିର୍ଭର କରି ପାରୁଥିଲେ । ଦୋକାନର ଦାୟିତ୍ୱ ତା' ଉପରେ ଛାଡ଼ିଦେଇ ଥରେ ଥରେ ସେ ବଡ଼ ସହରକୁ ସୁନା ଖରିଦ୍ କରିବାକୁ ଚାଲିଯାଉଥିଲେ ।

କିନ୍ତୁ ଶ୍ରୀଧରକୁ ସେ ଯେତିକି ଦରମା ଦେଉଥିଲେ, ତାହା ଯଥେଷ୍ଟ ନୁହେଁ । ଶ୍ରୀଧରର ପରିବାର ସେଥିରେ ଚଳି ଯାଉଥିଲେ ସତ, କିନ୍ତୁ ତା' ସ୍ତ୍ରୀ ପିଲାପିଲିଙ୍କ ସଉକ୍ ସେ ମେଣ୍ଟାଇ ପାରୁ ନଥିଲା । ପ୍ରତିବର୍ଷ ଶ୍ରୀଧର ଆଶା କରୁଥାଏ, ମାଲିକ ତା' ଦରମା ବଢ଼ାଇ ଦେବେ । କିନ୍ତୁ ସେ ଆଶା ନିରାଶାରେ ପରିଣତ ହେଉଥାଏ ।

ପନ୍ଦର ବର୍ଷ ଏହିପରି କାମ କରିବା ପରେ ଶ୍ରୀଧର ଭାବିଲା, ସେ ଧନଗୁପ୍ତଙ୍କ ଚାକିରି ଛାଡ଼ିଦେଇ ଅନ୍ୟ କେଉଁଠି ଚାକିରି ନେବ । ଗୋଟିଏ ରବିବାର ସେ ଯାଇ ଦୂରବର୍ତ୍ତୀ ବଜାରରେ ଥିବା ଶ୍ୟାମଲ ଶେଠ୍ ନାମକ ଜଣେ ଅଳଙ୍କାର ଦୋକାନୀ ସହ ଦେଖାକଲା ଓ ଚାକିରି ପାଇଁ ଅନୁରୋଧ କଲା । ଶ୍ୟାମଲ ଶେଠ୍ ତା'ସହ କଥାବାର୍ତ୍ତା କରି ବୁଝିଲେ ଯେ ସେ ବାସ୍ତବିକ ବହୁତ ଅଭିଜ୍ଞ ଲୋକ । ପରଦିନ ସେ ଆସି ଧନଗୁପ୍ତଙ୍କୁ ଦେଖା କରି ଶ୍ରୀଧର ସମ୍ପର୍କରେ ପଚାରିଲେ । ଧନଗୁପ୍ତ କହିଲେ, "ଶ୍ରୀଧର ଖାଲି ଅଭିଜ୍ଞ ନୁହେଁ, ଅତ୍ୟନ୍ତ ନିରଳସ ଓ ଜଣେ ବିଶ୍ୱାସଯୋଗ୍ୟ କର୍ମୀ ମଧ୍ୟ ।"

ଶ୍ୟାମଳ ଶେଠ୍ ଖୁସି ହୋଇ ଚାଲିଗଲେ । ପରଥର ଶ୍ରୀଧର ତାଙ୍କୁ ଦେଖା କରିବା ମାତ୍ରେ ସେ ତାଙ୍କୁ ଚାକିରି ଦେବାକୁ ରାଜି ଅଛନ୍ତି ବୋଲି କହିଲେ । କିନ୍ତୁ ସେ ଯେତେ ଦରମା ଦେବେ ବୋଲି କହିଲେ, ତାହା ଧନଗୁପ୍ତ ଦେଉଥିବା ଦରମାଠୁଁ ଅଧିକ ନୁହେଁ । ଅତଏବ ଶ୍ରୀଧର ତାଙ୍କଠି ଚାକିରି କରିବ ନାହିଁ ବୋଲି କହିଦେଲା ।

ସେ ଯାଇ ଅନ୍ୟ ଜଣେ ବ୍ୟବସାୟୀଙ୍କୁ କହିଲା । ସେ ବ୍ୟବସାୟୀ ମଧ୍ୟ ଶ୍ରୀଧରର ବ୍ୟବହାର ଓ ଅଭିଜ୍ଞତା ଦେଖି ଖୁସି ହେଲେ ଓ ଦୁଇ ଚାରିଦିନ ପରେ ଶ୍ରୀପୁର ଆସିବା ଅବସରରେ ଧନଗୁପ୍ତଙ୍କୁ ଶ୍ରୀଧର ବିଷୟରେ ପ୍ରଶ୍ନ କଲେ । ଧନଗୁପ୍ତ ଶ୍ୟାମଳ ଶେଠ୍‌ଙ୍କୁ ଯାହା କହିଥିଲେ, ତାଙ୍କୁ ମଧ୍ୟ ସେଇଆ କହିଲେ । ଶ୍ରୀଧର ସେ ବ୍ୟବସାୟୀଙ୍କୁ ପୁଣି ଦେଖା କରିବାରୁ ସେ ବି ତାଙ୍କୁ ଚାକିରି ଦେବାକୁ ପ୍ରସ୍ତୁତ ବୋଲି କହିଲେ । କିନ୍ତୁ ସେ ଯେତିକି ଦରମା ଦେବେ ବୋଲି କହିଲେ, ତାହା ଧନଗୁପ୍ତ ଦେଉଥିବା ଦରମାଠାରୁ ସାମାନ୍ୟ ମାତ୍ର ଅଧିକ । ଶ୍ରୀଧର ଦେଖିଲା, ଶ୍ରୀପୁର ଗାଁରେ ନିଜ ପରିବାର ଛାଡି ସେତେ ଦୂରରେ ରହିବା ଫଳରେ ତା'ର ଯେତିକି ଅଧିକା ଖର୍ଚ୍ଚ ଓ ଅସୁବିଧା ହେବ, ସେତିକି ମାତ୍ର ଅଧିକା ଟଙ୍କା ଦ୍ୱାରା ସେ ଅସୁବିଧା ଦୂର ହେବନାହିଁ । ତେଣୁ ସେ ସେଠାରେ ମଧ୍ୟ ମନା କରିଦେଲା ।



ଏହା ମଧ୍ୟରେ ଖାସ୍ ଶ୍ରୀପୁର ସହରରେ ଜଣେ ନୂଆ ଅଳଙ୍କାର ବ୍ୟବସାୟୀ ଆସି ଦୋକାନ ଖୋଲିଥାନ୍ତି । ଶ୍ରୀଧର ତାଙ୍କ ପାଖରେ ଚାକିରି ଖୋଜିଲା । ସେ ବି ଆସି ଧନଗୁପ୍ତଙ୍କୁ ଶ୍ରୀଧର ବିଷୟ ପଚାରିଲେ ।

ଧନଗୁପ୍ତ କହିଲେ, "ନା, ନା, ତମେ ଶ୍ରୀଧରକୁ ନେଇ ଚଳାଇ ପାରିବ ନାହିଁ ।"

ନୂଆ ବ୍ୟବସାୟୀ କହିଲେ, "ଯାହାହେଉ, ଆପଣଙ୍କୁ ପଚାରି ଭଲ କଲି । ନହେଲେ ଅଯୋଗ୍ୟ ଲୋକକୁ ନେଇ ବହୁତ ହଇରାଣ ହୋଇଥାନ୍ତି । ମୁଁ ତ ତାକୁ ଆପଣ ଦେଉଥିବା ଦରମାଠୁଁ ବେଶି ଦରମା ଦେବାକୁ ପ୍ରସ୍ତୁତ ହେଉଥିଲି !"

ସେ ନୂଆ ବେପାରୀ ଓ ଧନଗୁପ୍ତଙ୍କ ଭିତରେ ଯେଉଁ କଥାବାର୍ତ୍ତା ହେଉଥିଲା, ତାହା ଶ୍ରୀଧର ଶୁଣିଦେଲା । ସେ ବାହାରି ଆସି କ୍ଷୁବ୍ଧ କଣ୍ଠରେ ଧନଗୁପ୍ତଙ୍କୁ ପଚାରିଲା, "ମାଲିକ! ଆପଣ କାହିଁକି ମୋତେ ଅଯୋଗ୍ୟ ବୋଲି କହି ଗୋଟିଏ ଭଲ ଚାକିରିରୁ ବଞ୍ଚିତ କଲେ ?"

ଧନଗୁପ୍ତ କହିଲେ, "ଅଯୋଗ୍ୟ ବୋଲି ମୁଁ କହିନାହିଁ । ସେ ନିଜେ ସେ ମନ୍ତବ୍ୟ ଦେଲେ । ତେବେ ତମେ ପଚାରିପାର, ପୂର୍ବ ଦୁଇଜଣ ଲୋକଙ୍କ ଆଗରେ ମୁଁ ତମର ପ୍ରଶଂସା କରିଥିବା ବେଳେ ଏହାଙ୍କ ଆଗରେ ଏଭଳି ଚତୁରତା ପୂର୍ଣ୍ଣ କଥା କହିଲି କାହିଁକି? ପୂର୍ବ ଦୁଇଜଣ ଦୂରାନ୍ତରର ଲୋକ । ଏ ଲୋକଟି ଏହି ସହରରେ ମୋର ପ୍ରତିଦ୍ୱନ୍ଦୀ । ତେଣୁ ମୋ କଥା କହିବାରେ ତଫାତ୍ ହେବ ନିଶ୍ଚୟ ।"

"କିନ୍ତୁ ମୁଁ ଟିକିଏ ଅଧିକା ଦରମା ପାଇଥାନ୍ତି!" ଶ୍ରୀଧର କହିଲା ।

"ଶ୍ରୀଧର! ମୁଁ ତମ ଦରମା ପ୍ରତିବର୍ଷ ବଢ଼ାଇ ଚାଲିଛି । ଏ ନୂଆ ଲୋକ ଯାହା ଦେଇଥାନ୍ତା, ତମେ ମୋଠୁଁ ବର୍ତ୍ତମାନ ତା'ର ଦୁଇଗୁ ପାଉଛ!" ଧନଗୁପ୍ତ ହସି ହସି କହିଲେ ।

ଶ୍ରୀଧର କିଛି ନବୁଝି ଚାହିଁ ରହିଲା । ଧନଗୁ ବୁଝାଇ କହିଲେ, "ପ୍ରତିବର୍ଷ ତମର ଦରମ ଯାହା ବଢୁଛି, ତାହା ଗୋଟାଏ ଖାତାରେ ଲେଖା ହୋଇ ହିସାବ ରହୁଛି । ସେଥି ସୁଧ ମଧ୍ୟ ଯୋଗ ହେଉଛି । ମୁଁ ଜାଣେ; ତ ପିଲାମାନେ ବଡ଼ ହେଲେଣି । ଝିଅ ବାହାଘ ହେବ । ତମେ ଖଣ୍ଡିଏ ନୂଆ ଘର ବି ତୋଳି ଦରକାର । ମୁଁ ଯଦି ବଢ଼ନ୍ତା ଦରମା ତ ଦେଇ ଚାଲିଥାନ୍ତି, ତମେ ସବୁ ଖର୍ଚ୍ଚ କ ସାରିଥାନ୍ତ । ପ୍ରୟୋଜନ ଅପ୍ରୟୋଜନ ଭିତ ସୀମା ଟାଣିବା ସହଜ ନୁହେଁ ।" ଏହା କ ସେ ହିସାବ ଖାତା ଆଣି ଦେଖାଇ ଦେ ଶ୍ରୀଧର ଆଖିରେ ଲୁହ ଜକେଇ ଆସିଲା । ଧନଗୁପ୍ତଙ୍କୁ କୃତଜ୍ଞତାରେ ଜୁହାର ହେଲା ।






[ ୨ ]

[କନକ ଉପତ୍ୟକାରେ ହେଲା ଭୂମିକମ୍ପ । ରାଜକୋପରୁ ରକ୍ଷା ପାଇବା ନିମନ୍ତେ ନିର୍ଦ୍ଦୋଷ ରାଜୁ ପର୍ବତର ମଧ୍ୟଦେଶରେ ଥିବା ପୂର୍ବ ରାଜବଂଶର ପରିତ୍ୟକ୍ତ ଦୁର୍ଗର ଭଗ୍ନାବଶେଷ ଭିତରେ ପହଞ୍ଚି କମ୍ବଦନ୍ତର ସୁବର୍ଣ୍ଣ ପ୍ରତିମା ଆବିଷ୍କାର କଲା । ଏକ ରହସ୍ୟମୟ କଣ୍ଠସ୍ୱର ତାକୁ କହିଦେଲା କି ପ୍ରପାତ ଟପି ଗଲେ ସେ ଏକ ନୂଆ ରାଜ୍ୟରେ ପହଞ୍ଚିବ । ଭେଟିବ ଜଣେ ଦେବୀଙ୍କୁ । ତାଙ୍କ ଆଶୀର୍ବାଦରେ ସେ ମୂର୍ତ୍ତିରେ ହୋଇ ପାରିବ ଜୀବନ୍ୟାସ । ତେବେ ଯିବା ପୂର୍ବରୁ ମୂର୍ତ୍ତିର ସୁରକ୍ଷା ପାଇଁ ବ୍ୟବସ୍ଥା କରିବା ଆବଶ୍ୟକ । ତା'ପରେ...]

ରାଜୁ ଆଚମ୍ବିତ ଓ ଆମୋଦିତ ଅବସ୍ଥାରେ କିଛି ସମୟ ବିତାଇ ତା'ପରେ ଅଦୂରର ଜଳପ୍ରପାତ ଆଡ଼େ ଦୃଷ୍ଟି ଦେଲା । ଜନଶ୍ରୁତି କହେ, ଥରେ ଯିଏ ସେ ପ୍ରପାତ ଅତିକ୍ରମ କରି ସେପାରିକୁ ଯାଏ, ସିଏ ଆଉ ଲେଉଟି ଆସି ପାରେନାହିଁ । ତା'ର କିନ୍ତୁ ସେପାରିକୁ ଯିବା ଦିଗରେ ତିଳେ ବି ଦ୍ୱିଧା ନଥିଲା । ତାକୁ ସେ ଦିଗରେ ନିର୍ଦ୍ଦେଶ ଦେଇଥିବା ରହସ୍ୟମୟ କଣ୍ଠସ୍ୱର ଉପରେ ତା' ମନରେ ସଞ୍ଚାରି ହୋଇଥିଲା ଗଭୀର ପ୍ରତ୍ୟୟ ।

କିନ୍ତୁ ପ୍ରତିମା ଯେପରି ସୁରକ୍ଷିତ ରହିବ ପ୍ରଥମେ ତାକୁ ସେହି ଦିଗରେ ଯଥାର୍ଥ ବ୍ୟବସ୍ଥ

ମନୋଜ ଦାସ



କରିବାକୁ ହେବ । ସେ ଦିଗରେ ରାଜାଙ୍କ ସହାୟତା ବିନା ବା କ'ଣ କରାଯାଇ ପାରେ ? ରାଜାଙ୍କୁ ସେ ନ ଜଣାଇଲେ ଆଉ କେହି ନିଷ୍ଟୟ ଜଣାଇବ ଏବଂ ରାଜା କ'ଣ କରିବେ କହିବା ସମ୍ଭବ ନୁହେଁ ।

ରଜୁ ସେ ପ୍ରଭାତରେ ପର୍ବତରୁ ଅବତରଣ କଲାବେଳେ ନିଜକୁ ଖୁବ୍ ଫୁଲଭଳି ଉଶ୍ୱାସ ଅନୁଭବ କରିଥିଲା । ନମ୍ର ସୂର୍ଯ୍ୟରଶ୍ମିରେ ପ୍ରାସାଦର ତୋରଣଦେଶ ଝଟକିବାକୁ ଆରମ୍ଭ କରିଥିଲା । ସେଠାରେ ଥିବା ଦ୍ୱାରରକ୍ଷୀମାନେ ତୁରୀ ବଜାଇ ସାରିବା ବେଳକୁ ରଜୁ ତାଙ୍କ ପାଖକୁ ଯାଇ ସେମାନଙ୍କୁ କହିଲା, "ମୁଁ ରାଜାଙ୍କୁ ଭେଟିବାକୁ ଚାହେଁ ।"

"ସତେ ? ତମେ ବାବୁ କେଉଁ ସମ୍ରାଟ ଯେ ରାଜା ଏଇନେ ତମକୁ ସଂଖୋଳିବେ ? ଆମେ ତୁରୀ ବଜାଇ ଆମ କର୍ତ୍ତବ୍ୟ ସମାପନ କରୁଛୁଁ । ବର୍ତ୍ତମାନ ମଣିମାଙ୍କ ପହଡ଼ ଭଙ୍ଗାଇବା ଦିଗରେ ସୂର୍ଯ୍ୟ ତା' କର୍ତ୍ତବ୍ୟ କରିବ । ଅର୍ଥାତ୍ ରାଜାଙ୍କ ବାତାୟନ ଯାଏ ଉଠି ତାଙ୍କୁ ଜଗାଇବ ।" ମୁଖ୍ୟ ଦ୍ୱାରରକ୍ଷୀ କହିଲା ।

"କିନ୍ତୁ ସୂର୍ଯ୍ୟ ରାଜାଙ୍କ ଦ୍ୱିତଳ ବାତାୟନ ପର୍ଯ୍ୟନ୍ତ ଉଠିବା ବେଳକୁ ତ ବେଳ ପହରେ ହୋଇଯାଇଥିବ !" ରଜୁ କହିଲା ।

"ମୂର୍ଖ ଯୁବକ ! ବେଳ ପହରେ ତମ ପାଇଁ, ଆମ ପାଇଁ । ରାଜାଙ୍କ ପାଇଁ ତାହା ପ୍ରଭାତ ।" ମୁଖ୍ୟ ଦ୍ୱାରରକ୍ଷୀ ପାଣ୍ଡିତ୍ୟପୂର୍ଣ୍ଣ ଭଙ୍ଗୀରେ ବୁଝାଇ ଦେଲେ ।

ରଜୁ ହଠାତ୍ ଭିତରକୁ ପଶିଗଲା । କେଜାଣି କାହିଁକି ଦ୍ୱାରରକ୍ଷୀମାନେ ତା' ମୁହଁକୁ ଚାହିଁ ହତବମ୍ବ ହୋଇ ରହିଗଲେ । ଅନ୍ୟ କେହି ବି ତାକୁ ଅଟକାଇବାକୁ ସାହସ କଲେ ନାହିଁ । କାରଣ ସେତିକିବେଳେ ଉଦୟ ସୂର୍ଯ୍ୟର ପ୍ରଥମ ରଶ୍ମି ତା' ମୁହଁରେ ଆସି ପଡ଼ୁଥିଲା ଓ ସେ ଦିଶୁଥିଲା ଅପୂର୍ବ । ଯେଉଁ ବାତାୟନ ପାଖରେ ସୂର୍ଯ୍ୟ ତାଙ୍କ କର୍ତ୍ତବ୍ୟ କରିବା କଥା, ସେ ଯାଇ ସେଠି ପହଞ୍ଚିଗଲା ।

"ରାଜା ମହାଶୟ, ଉଠନ୍ତୁ । ଆପଣଙ୍କୁ ଦେଖାଇବି ଏକ ବିସ୍ମୟକର ଦୃଶ୍ୟ ।" ସେ ନିର୍ଭୟରେ କହିଲା ।

"ହେଇଛି, ମନ୍ତ୍ରୀମାଙ୍କ ଉପାଧିମାଳାରୁ ଅନ୍ତତଃ ଏକ-ଦଶମାଂଶ କହୁଥା! ଜୟ, ହେ ଚଣ୍ଡ ପ୍ରଚଣ୍ଡ ଶତାବାଘ-ସୂଦନ, ବ୍ୟାଘ୍ର-ପୋଷକ, ସିଂହ-ପ୍ରପୋଷକ ମହାରାଜ···" ଜଣେ ପଣଗୃରକ ରଜୁକୁ ନେତୃର ହୋଇ କହିଲା।

"ରାଜା!" ପାଟିକଲା ରଜୁ।

ବାତାୟନ ସେପଟେ ଉଦିତ ହେଲା ରାଜାଙ୍କ ମୁଖମଣ୍ଡଳ। ଆଠ ଦଶଜଣ କର୍ମଗୃହୀ ତଳେ ସ୍ତମ୍ଭ ବା କାନ୍ଥ ଆଢୁଆଳରେ ଲୁଚି ସେ ଦୃଶ୍ୟ ଦେଖୁଥିଲେ। ରାଜା ଯେ କ୍ରୋଧରେ ଫାଟିବେ ଏବଂ ରଜୁ ତା' ମୁଣ୍ଡ ଗୋଟିକ ହରାଇବା ସଙ୍ଗେ ସଙ୍ଗେ ସେମାନଙ୍କ ଭିତରୁ କିଏ ଗୋଟାଏ କାନ ତ କିଏ ଗୋଟାଏ ଆଖି ବା କିଏ ତା' ନାକଟି ହରାଇବ, ଏଥିରେ ସେମାନଙ୍କର ସନ୍ଦେହ ନଥିଲା।

"କିଏ ସେ ନୃଶଂସ ମୋ ନିଦ ଭଙ୍ଗାଇଲା? ଆରେ, ମୁଁ ସ୍ୱପ୍ନ ଦେଖୁଥିଲି! କି ଚମତ୍କାର ସ୍ୱପ୍ନ! ମୁଁ ହୋଇଥିଲି ବରପାତ୍ର! କି ସୁନ୍ଦର ଦିଶିଥିବି! କେହି ଯାହା ଦେଖିପାରିଲେ ନାହିଁ!" ରାଜା ଏହା କହି ବାତାୟନ ଦେଇ ଦୃଷ୍ଟି ନିକ୍ଷେପ କଲେ। ରଜୁ ବାତାୟନର ନିକଟବର୍ତ୍ତୀ ହେଲା ଓ "ନମସ୍କାର!" ବୋଲି କହି ରାଜାଙ୍କ ଦୃଷ୍ଟି ଆକର୍ଷଣ କଲା ଓ ସଙ୍ଗେ ସଙ୍ଗେ କହିଗଲା, "ରାଜା! ଆପଣଙ୍କ ସ୍ୱପ୍ନ ଛୁଟିଗଲା ତ? ସ୍ୱପ୍ନଠୁଁ ବହୁଗୁଣ ବଳି ସୁନ୍ଦର ଅଥଚ ବାସ୍ତବ ଦୃଶ୍ୟ ଆପଣଙ୍କୁ ଦେଖାଇବି!



କହିବି ସେ ଦୃଶ୍ୟ କ'ଣ? ଆପଣଙ୍କ ଶୟନ-କକ୍ଷକୁ ଯାଇପାରେଁ?"

ରାଜା ସେମିତ ଅନାଇ ରହିଲେ। ଦୁଇଜଣ କର୍ମଗୃହୀ ମୂର୍ଚ୍ଛା ଗଲେ। କିନ୍ତୁ ଆଶ୍ଚର୍ଯ୍ୟ, ରାଜାଙ୍କ ମୁହଁର ରଙ୍ଗ ଏଣ୍ଡୁଅ ରୀତରେ ବଦଳିଗଲା ସେ କହିଲେ, "ଟୋକାକୁ ଭିତରକୁ ନେଇଆସ।"

କେହି ନେଇଯିବା ଦରକାର ନଥିଲା ରଜୁ କୁଦାଟପ ଭିତରକୁ ପଶିଗଲା। ରାଜା ସହ ତା'ର କି କଥା ହେଲା ଜଣାନାହିଁ କିନ୍ତୁ ଦେଖାଗଲା, ରାଜା ତରବରରେ ତ ପଛେ ପଛେ ପାହାଚ ଦେଇ ଅବତର କରୁଛନ୍ତି। ପଣଗୃରକମାନେ ନିର୍ବାକ ରହିଲେ



"ଚଣ୍ଡ ପ୍ରଚଣ୍ଡ ମହାରାଜ!..." ମନ୍ତ୍ରୀ ତୁରନ୍ତ ଦୌଡ଼ି ଆସି ରାଜାଙ୍କୁ କିଛି କହିବାକୁ ଚେଷ୍ଟା କଲେ ।

"ସବୁ ବୁଢ଼ୁଯାକ ମୋ ପଛେ ପଛେ ଆସ!" ରାଜା କୌଣସି କାରଣରୁ ଉତ୍ତେଜିତ ହେଲେ ଅଭିଜ୍ଞମାନଙ୍କୁ ବୁଢ଼ୁ ବୋଲି ସମ୍ବୋଧନ କରୁଥିଲେ ।

ରାଜାଙ୍କ ଅଶ୍ୱର ପହଞ୍ଚ ସେଯାଏ ଘଟି ନଥିଲା । ରାଜା କାହାକୁ ଅପେକ୍ଷା ନକରି ରାଜୁ ପଛେ ପଛେ ଅଣନିଃଶ୍ୱାସୀ ହୋଇ ଚାଲିଲେ ।

"ମହାରାଜ, ଆପଣ ମଧ୍ୟେ ମଧ୍ୟେ ବନ-ପର୍ବତରେ ନିରୋଳାରେ ଯାଇ ବୁଲନ୍ତେ ନାହିଁ?" କଥାବାର୍ତ୍ତା ହେଲେ ରାଜାଙ୍କ ବାହାଚାଲି କ୍ଳେଶ ହ୍ରାସ ହେବ, ଏହି ଆଶାରେ ରାଜୁ ଏ ପ୍ରଶ୍ନ କଲା ।

"ଆରେ ଟୋକା! ରାଜା ନଅରରେ ସୁଖରେ, ଆନନ୍ଦରେ, ଆରାମରେ ରହିବା କଥା । ଏତିକ ଜାଣିନାହଁ?"

"ମହାରାଜ, ମୁକ୍ତ ପବନରେ ବୁଲିଲେ, ସୁକୁମାର ଘାସ ଉପରେ ଗଡ଼ଗଲେ, ଝରଣାରେ ଗାଧୋଇଲେ କେତେ ଭଲ ଲାଗେ! ସ୍ୱାଧୀନତାର ସେ ସ୍ୱାଦ..."

"ସ୍ୱାଧୀନତା? ଯେ କୌଣସି ଲୋକର ସ୍ୱାଧୀନତା କାଢ଼ିନେବାର ସ୍ୱାଧୀନତା ମୋର ଅଛି! ମୋର ପୁଣି ଅଧିକା ସ୍ୱାଧୀନତା କ'ଣ ପାଇଁ ଲୋଡ଼ା? କିନ୍ତୁ କହ, ତୁ କାହିଁକି ପର୍ବତ ତଳ ବଣ ଭିତରେ ପଶିଥିଲୁ?" ରାଜା ଧଇଁସଇଁ ହୋଇ ପ୍ରଶ୍ନ କଲେ ।

"ମହାରାଜ, ନ ପଶିଥିଲେ ସୁବର୍ଣ୍ଣ ପ୍ରତିମା ଦେଖିଥାନ୍ତି କିପରି, ଆପଣଙ୍କୁ ବା ଦେଖାନ୍ତି କିପରି? ଦେଖନ୍ତୁ ଏଥର!" ରାଜୁ ପ୍ରତିମା ଆଡ଼େ ଅଙ୍ଗୁଳି ନିର୍ଦ୍ଦେଶ କଲା ।

ରାଜା ଅଣ୍ଟାରେ ହାତଦେଇ ରାଜକୀୟ ଭଙ୍ଗୀରେ ଉପରକୁ ଅନାଇଲେ । ବେଶ୍ କିଛି ସମୟ ଧରି ସେ ଭଙ୍ଗୀରେ ସେ ଅଟଳ ରହିଲେ । କ୍ରମେ ତାଙ୍କ ଦୃଷ୍ଟି ହେଲା ତୀବ୍ରତର ଓ ରକ୍ତିମ । ସେ ଡୋଳା କେତେଥର ବୁଲାଇ ରାଜୁ ଉପରେ ଦୃଷ୍ଟି ନିବଦ୍ଧ କଲେ ।



"ଅଚ୍ଛା କରୁଛୁ ?" ରାଜା ମାଡ଼ ଖାଇଥିବା କୁକୁରଟିଏ ଭୁକିବା ଭଙ୍ଗୀରେ ପଚାରିଲେ ।

"ମହାରାଜ, ଆପଣ ଏ କୋମଳ ସୂର୍ଯ୍ୟା-ଲୋକରେ ପ୍ରଦୀପ୍ତ ସୁନ୍ଦର ପ୍ରତିମା କ'ଣ ସତରେ ଦେଖିପାରୁ ନାହାନ୍ତି ?" ରାଜୁ ବିଚଳିତ ବୋଧ କରି ପଚାରିଲା ।

"ନା! ନା! ନା !!"

"କେମିତି ?"

"କାରଣ ପ୍ରତିମା ସେଠି ନାହିଁ! ହଇରେ ଦୁଷ୍ଟ ଭୂତ! ମୁଁ ସୁନ୍ଦର ସକାଳୁଆ ନିଦରେ ବର ରୂପେ ବେଶ ହେବାର ସ୍ୱପ୍ନ ଦେଖୁଥିଲି । ତୁ ତାକୁ ଭଙ୍ଗିଲୁ କାହିଁକି ? ତୋତେ ହତ୍ୟା କରିବି ।"

"ମହାରାଜ, ଆପଣ ତ ବହୁବାର ବର ହୋଇଛନ୍ତି ଓ ବହୁ ଲୋକଙ୍କୁ ହତ୍ୟା କରିବାର ଗୌରବ ମଧ୍ୟ ଅର୍ଜନ କରିଛନ୍ତି···"

ରାଜା କିନ୍ତୁ ତା' କଥା ଶୁଣୁ ନଥିଲେ । କାନ୍ଦ କାନ୍ଦ ହୋଇ ସେ କହିଲେ, "ତରତର ହୋଇ ଦୁଇ ଭିନ୍ନ ଭିନ୍ନ ପାଦୁକା ଦଳରୁ ପଟେ ପଟେ ମଡ଼ାଇ ଚାଲି ଆସିଲି! ରାଜା ହିସାବରେ ସକାଳେ ମୋର ପ୍ରଥମ କାମ ସୁନା ପାନିଆରେ ନିଶ କୁଣ୍ଡାଇବା! ସେତକ ବି କରିପାରିଲି ନାହିଁ!"

ରାଜାଙ୍କ ଆର୍ତ୍ତନାଦ ପ୍ରତି ସମ୍ବେଦନା ଜଣାଇ ଦୁଇଟି ବିଲୁଆ ରଡ଼ି କଲେ । ଇତିମଧ୍ୟରେ ସେଠାରେ ପହଞ୍ଚି ଯାଇଥିଲେ ମନ୍ତ୍ରୀ ତଥା ଅତଙ୍କାମୀ ମଣ୍ଡଳର ଉତ୍କଣ୍ଠିତ ସଭ୍ୟବୃନ୍ଦ ।

"ମହିମା!" ଭଙ୍ଗା କଣ୍ଠରେ ସମ୍ବୋଧନ କଲେ ଜଣେ ଦରବାରୀ ଅମାତ୍ୟ ।

"ଚଣ୍ଡ ପ୍ରଚଣ୍ଡ ମହାରାଜ!" କହିଲେ ଅନ୍ୟ ଜଣେ ।

ସେମାନେ ଆଉ କିଛି କହିପାରିଲେ ନାହିଁ । ରାଜା ସକାଳଟାରେ ଗୋଟାଏ ସାମାନ୍ୟ ବାଳକ କଥାରେ ସେ ଭୂତକୋଠି ଭିତରକୁ କାହିଁକି କେମିତି ମାଡ଼ି ଆସିଲେ, ସେଯାଏ ସେମାନେ ତାହା ବୁଝିପାରୁ ନଥିଲେ ।

ରାଜା ଛିଙ୍କିଲେ । ମନ୍ତ୍ରୀ କହିଲେ, "ହ କପାଳ! ମୁଁ ଚିରଦିନ ଏ ମତ ପୋଷ



କରିଛି—ଯେ ସକାଳର ବାଆ ଭଳି ଭୟଙ୍କର ବିପଦ ଆଉ କିଛି ନାହିଁ—ବିଶେଷତଃ ଶତକର ଶହେଘଶ ରାଜକୀୟ ରକ୍ତ ପ୍ରବାହିତ କଲେ-ବରଟିମାନ ପାଇଁ।"

"ଏ ବାଳକ ମୋତେ ଠକି ଦେଲା!" ରାଜା ଅଭିଯୋଗ କଲେ।

"ନା, ମହାରାଜ!" ଦୃଢ଼କଣ୍ଠରେ କହିଲା ରାଜୁ। ଅମାତ୍ୟମାନଙ୍କୁ ସମ୍ବୋଧନ କରି ସେ କହିଲା, "ଆପଣମାନେ କ'ଣ ଦେଖୁଛନ୍ତି, ସେକଥା ଠିକଏ ରାଜାଙ୍କୁ କହନ୍ତୁ!"

ଅତିଜ୍ଞାନୀମାନେ ସାଧ୍ୟାନୁସାରେ ଆଖି ବଡ଼ ଡ଼ କରି ରାଜୁ ନିର୍ଦ୍ଦେଶ କରୁଥିବା ସ୍ଥାନ ଆଡ଼େ ଅନାଇଲେ।

"ମୁଁ ଦେଖୁଛି ଗୋଟିଏ ବିଚକ୍ଷଣ ପେଚା!" କହିଲେ ମନ୍ତ୍ରୀ।

"ମୁଁ ଦେଖୁଛି ଗୋଟିଏ ଅତିକାୟ ମାକଡ଼ଶା।" କହିଲେ ମୁଖ୍ୟ ଅମାତ୍ୟ।

"ହା ଭଗବାନ! ଆପଣମାନେ କେହି କିମ୍ବଦନ୍ତିର ସେ ସୁବର୍ଣ୍ଣ ପ୍ରତିମା ଦେଖିପାରୁ ନାହାନ୍ତି?" ରାଜୁ ବଡ଼ ବ୍ୟଥିତ ସ୍ୱରରେ ପ୍ରଶ୍ନ କଲା।

"କିମ୍ବଦନ୍ତିର ସୁବର୍ଣ୍ଣ ପ୍ରତିମା? ଆରେ! ଏ ଟୋକା ତ ପାଗଳ!" କହିଲେ ମୁଖ୍ୟ ଅମାତ୍ୟ। ଅନ୍ୟମାନେ ତାଙ୍କ ସହ ଏକମତ ହେଲେ।

"ଏ ଟୋକାକୁ ପର୍ବତ ଶିଖରକୁ ନେଇଯାଇ ତଳକୁ ଗଡ଼ାଇ ଦିଅ।" ରାଜା ହୁକୁମ୍ ଦେଲେ। ସେ ସ୍ୱୟଂ ନିଜ ହୁକୁମ୍ ତାମିଲ୍ କରିବା ନିମନ୍ତେ ତତ୍ପର ହୋଇ ରାଜୁର ଡାହାଣ ହାତକୁ କାବୁ କରିନେଲେ। ମନ୍ତ୍ରୀ ଧରିନେଲେ ତା'ର ବାମ ହାତ। ଦୁଇ ଅମାତ୍ୟ ତା'ର ଦୁଇ ଗୋଡ଼ର ଦାୟିତ୍ୱ ନେଲେ। ଭୃତ୍ୟ ଜଣକ ଧରିଲେ ତା'ର ବେକ। ବାକି ଦୁଇଜଣ କିଛି ଧରିବାକୁ ନପାଇ ବଡ଼ ବିକଳରେ ଲସର ପସର ହେଉଥାନ୍ତି।

ରାଜା ତଥା ଏ ଭଦ୍ରଲୋକମାନେ ସୁବର୍ଣ୍ଣ ପ୍ରତିମା ଦେଖିପାରୁ ନଥିବାରୁ ରାଜୁ ‹ହେ ଆଶ୍ଚର୍ଯ୍ୟ ହେଉଥାଏ ଯେ ସେମାନଙ୍କୁ ବାଧା

ପୋଲଭଳି ଉତ୍ସାହ ତା'ର ନଥାଏ । ସେମାନେ ତାକୁ ଧରି ପର୍ବତାରୋହଣ କରିବାକୁ ପ୍ରସ୍ତୁତ ହୋଇ ଯେମିତି ଉପରକୁ ଅନାଇଛନ୍ତି, ସେମିତି ସେମାନଙ୍କ କଣ୍ଠରୁ ନିର୍ଗତ ହେଲା ସମବେତ ବିସ୍ମୟ-ସୂଚକ ଧ୍ୱନି । ସେମାନେ ରାଜୁକୁ ଛାଡ଼ିଦେଲେ ।

ଏଥର ରାଜୁ ଆହୁରି ଆଶ୍ଚର୍ଯ୍ୟ ହେଲା ।

"ଚମତ୍କାର ! ଚମତ୍କାର !" ଅମାତ୍ୟମାନେ କହିଲେ ।

"ଚୁପ୍ !" ରାଜା ଗର୍ଜନ କଲେ । "ସେକଥା ସିନା ମୁଁ କହିବି ! ଚମତ୍କାର, ଚମତ୍କାର !! ମାନେ, ଇଏ, ଲଡୁ ଭଳି, ନା ନା, ଅନେକ ଲଡୁ ଭଳି, ନା, ନା, ଆହୁରି ବେଶି ଲଡୁ ଭଳି ଚମତ୍କାର !"

"ମହାରାଜ, ବୋଧହୁଏ ଇନ୍ଦ୍ରଧନୁ ଭଳି, କିମ୍ବା ପଦ୍ମଫୁଲ ଭଳି, ଅଥବା ଅପ୍‌ସରା ଭଳି ସୁନ୍ଦର କହିଲେ ଠିକ୍ ହେବ ପରା !" ରାଜୁ ନମ୍ର କଣ୍ଠରେ ମନ୍ତବ୍ୟ ଦେଲା ।

ବାଳକ; ତୁ ବି କେତେ ଚମତ୍କାର ! ମୁଁ ଜାଣେ, ମୁଁ ବୋକା ନୁହେଁ, ତୋତେ ଛୁଇଁବା ଫଳରେ ମୁଁ ସେ ପ୍ରତିମା ଦେଖିଲି ଭଳି ଦୃଷ୍ଟି ପାଇଲି । ଆହୁରି ଭଲ କରି ତୋତେ ଛୁଇଁବି ।" ରାଜା ଏହା କହି ରାଜୁକୁ ଭିଡ଼ି ଧରିଲେ ।

"ମୋ କ୍ଷେତ୍ରରେ ବି ସେଇଆ ହେଲା !" କହିଲେ ମନ୍ତ୍ରୀ । ଅମାତ୍ୟମାନେ ବି ସେଇଆ କହି ରାଜୁ ଆଡ଼େ ସପ୍ରଶଂସ ଦୃଷ୍ଟିରେ ଅନାଇଲେ ।

"ମହାରାଜ, ଆପଣ ସେ ସୁବର୍ଣ୍ଣ ପ୍ରତିମା ଅବଲୋକନ କରିବା ଫଳରେ ନିଜେ କେତେ ଚମତ୍କାର ଦିଶିଲେଣି ଜାଣନ୍ତି ?" ରାଜୁ କହିଲା ।

"ନା, ମୁଁ ଜାଣେ ନା ତ ! ଆରେ, କିଏ ଅଛ, ମୋ ଦର୍ପଣ କାହିଁ ? ଆଣ, ଆଣ, ଦୌଡ଼ି ଯାଇ ମୋ ଦର୍ପଣ ନେଇ ଆସ । ମୁଁ ମୋତେ ଦେଖିବି ! ମୁଁ କେତେ ସୁନ୍ଦର !" ଅଧୈର୍ଯ୍ୟ ହୋଇ ରାଜା କହିଲେ । (କ୍ରମଶଃ)






# ଦୁଇ ପ୍ରଚ୍ଛଦବେଶୀ

ନିଶା ଗରଜୁଥାଏ । ହୁହାଲୁ ହୁହା ଶୀତଳ ପବନ ସାଙ୍ଗକୁ ଝିପଝିପି ବର୍ଷା ହେଉଥାଏ । ଶ୍ୱାନଶ୍ୱାପଦଙ୍କ ରଡ ଓ ଘଡ଼ଘଡ଼ ଶବ୍ଦର ବିରତିବେଳେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ ।

ତେବେ ତାକୁ କାନ୍ଧରେ ପକାଇ ଶୂନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଅଗ୍ରସର ହେବାମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା, ତମେ ତମର କୌଣସି ବନ୍ଧୁର ଅଭୀଷ୍ଟ ସିଦ୍ଧି ନିମନ୍ତେ ଏ ଦୁର୍ଯୋଗପୂର୍ଣ୍ଣ ରାତିରେ ଏଭଳି

## ବେତାଳ କଥା



ଦୁଃସାହସିକ କାମ ହାତକୁ ନେଇଛ ପରା! ତେବେ ତମେ ଜାଣିରଖିବା ଆବଶ୍ୟକ ଯେ ଆଜିର ବନ୍ଧୁ କାଲିକି ଶତ୍ରୁ ହୋଇଯାଇ ପାରେ। ଶତ୍ରୁ ପୁଣି ଖାଲି ବନ୍ଧୁ ନୁହେଁ, ଆତ୍ମୀୟ ବି ହୋଇଯାଇ ପାରେ। ତମକୁ ଗୋଟାଏ ଦୃଷ୍ଟାନ୍ତ ଦେଉଛି। ମନଦେଇ ଶୁଣ। ଶୁଣିଲେ ଶ୍ରମଭାର ଲାଘବ ମନେ ହେବ।"

ବେତାଳ କହିଲା: ଅନେକ ଦିନ ତଳର ଥା। ଚନ୍ଦ୍ରଗିରି ଉପରେ ରାଜୁତି କରୁଥିଲେ ଜା ବିଷ୍ଣୁଭଦ୍ର। ସେ ଥିଲେ ଜଣେ ବିବେକୀ ସକ। ତେବେ ବୃଦ୍ଧାବସ୍ଥାରେ ସେ ରାଜ-ର୍ଯ୍ୟରେ ଆଗ୍ରହ ହରାଇ ବିଶ୍ରାମ ନେବାକୁ ସ୍ଥ କଲେ। ରାଜ୍ୟକୁ ତାଙ୍କର ପୁତ୍ର ଯୁବରାଜ ଆଦିତ୍ୟକୁମାର ଥିଲେ ଜଣେ ବୁଦ୍ଧିମାନ ଓ ସାହସୀ ଯୁବକ। ରାଜା ତାଙ୍କର ଅଭିଷେକ କରାଇଲେ।

ଯୁବକ ରାଜା ଆଦିତ୍ୟକୁମାର ଶାସନ କାର୍ଯ୍ୟରେ ଗଭୀର ମନୋନିବେଶ କଲେ। ପ୍ରଜାଙ୍କ ହିତ ସାଧନ ପାଇଁ ସେ ନାନା ପ୍ରକାର ଉଦ୍ୟମ କଲେ ଓ ସେଥିରେ ସଫଳ ହେଲେ। ସେ ଲୋକଙ୍କ ଶ୍ରଦ୍ଧାଭାଜନ ହେବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ଖୁବ୍ ସନ୍ତୋଷ ଲାଭ କଲେ।

ଦିନେ ସେ ରାଜ୍ୟ ସୀମାରେ ଥିବା ଅରଣ୍ୟ ଭିତରେ ମୃଗୟା କରୁଁ କରୁଁ ବହୁତ ଦୂରକୁ ଚାଲିଗଲେ। ହଠାତ୍ ତାଙ୍କ ଆଖିରେ ପଡ଼ିଲା ଗୋଟିଏ ସୁନ୍ଦର ଉପତ୍ୟକା। କୁଳୁକୁଳୁ ନାଦିନୀ ଝରଣାଟିଏ ସାଙ୍ଗକୁ ସେ ଉପତ୍ୟକା ଅସଂଖ୍ୟ ପୁଷ୍ପଶୋଭିତ ବୃକ୍ଷଲତାରେ ଭରି ରହିଥିଲା। ଏଡ଼େ ସୁନ୍ଦର ଅଞ୍ଚଳ ସେ କେବେ ଦେଖି ନଥିଲେ!

"ଆମ୍ଭ ରାଜ୍ୟରେ ଏଡ଼େ ମନୋରମ ଉପତ୍ୟକା ରହିଥିଲା!" ସେ ମନ୍ତବ୍ୟ ଦେଲେ।

ତାଙ୍କ ସାଥିରେ ଥିବା ତାଙ୍କର ଜଣେ ପ୍ରବୀଣ ଅମାତ୍ୟ କହିଲେ, "ମହାରାଜ! ଏ ଉପତ୍ୟକା ଚନ୍ଦ୍ରଗିରି ରାଜ୍ୟର ଅନ୍ତର୍ଭୁକ୍ତ ନୁହେଁ। ଏହା ଆମର ପଡ଼ୋଶୀ ରାଜ୍ୟ ରୁଦ୍ରପୁର ଭିତରେ ଅବସ୍ଥିତ।"

ରାଜା ଆଦିତ୍ୟକୁମାର ଗମ୍ଭୀର ଦେଖାଗଲେ। ଯେତେହେଲେ ସେ ଥିଲେ ଜଣେ ଅତ୍ୟ

ଉତ୍ସାହୀ ଯୁବକ । ହଠାତ୍ ସେ ଗୋଟାଏ ଏପରି ସିଦ୍ଧାନ୍ତ ନେଲେ ଯାହା ପରିଷଦଙ୍କ ମନର ପରିଚୟ ନୁହେଁ ଠିକ୍, ତେବେ ରାଜାମାନେ ଏପରି କରିବା ସାଧାରଣ କଥା । ସେ ନିଜ ସୈନ୍ୟବାହିନୀ ପଠାଇ ସେ ଉପତ୍ୟକା ଅଧିକାର କରିବାକୁ ଉଦ୍ୟମ କଲେ । ରୁଦ୍ରପୁର ରାଜ୍ୟର ସୈନ୍ୟଦଳ ଆସି ଚନ୍ଦ୍ରଗିରିର ଆକ୍ରମଣକାରୀ ବାହିନୀକୁ ସାମ୍ନା କଲେ । କିନ୍ତୁ ସେମାନେ ପରାସ୍ତ ହେଲେ । କାରଣ ଏଭଳି ଆକ୍ରମଣ ପାଇଁ ସେମାନେ ପ୍ରସ୍ତୁତ ନଥିଲେ । ଉପତ୍ୟକା ଚନ୍ଦ୍ରଗିରି ରାଜ୍ୟ ସହିତ ସାମିଲ୍ ହେଲା ।




ରୁଦ୍ରପୁରର ରାଜା ସୌମ୍ୟଦେବ ଏଥିରେ ଭୀଷଣ ବ୍ୟଥା ଓ ଅପମାନ ପାଇଲେ । ସେ ନିଜ ମନ୍ତ୍ରୀମଣ୍ଡଳ ସହ ପରାମର୍ଶ କରି ନିଜ ସୈନ୍ୟବାହିନୀକୁ ସୁସଂଗଠିତ କରିବାରେ ମନ ଦେଲେ । ଯଥା ସମୟରେ ଚନ୍ଦ୍ରଗିରି ଆକ୍ରମଣ କରି ରାଜା ଆଦିତ୍ୟକୁମାରଙ୍କୁ ପରାସ୍ତ କରି ସେ ଦଖଲ କରିଥିବା ଉପତ୍ୟକା ପୁଣି ଫେରାଇ ଆଣିବା ହେଲା ତାଙ୍କ ଉଦ୍ଦେଶ୍ୟ ।

ରାଜା ସୌମ୍ୟଦେବଙ୍କର ଥିଲେ ଜଣେ ଗୁଣବତୀ, ରୂପବତୀ କନ୍ୟା । ଜ୍ୟୋତିଷମାନେ କହିଲେ କି ସେହି ବର୍ଷ ତାଙ୍କର ବିବାହ ସକାଶେ ଅତ୍ୟନ୍ତ ଶୁଭ ସମୟ । ରୁଦ୍ରପୁରର ପରମ୍ପରା ଅନୁସାରେ ସ୍ୱୟମ୍ବର ସଭାରେ ରାଜକନ୍ୟାମାନେ ପତି ବରଣ କରିଥାନ୍ତି । ରାଜା ବରପାତ୍ର ହେବା ଭଳି ଉପଯୁକ୍ତ ରାଜା ଓ ରାଜକୁମାରମାନଙ୍କ ତାଲିକା ପ୍ରସ୍ତୁତ କରିବାକୁ ମନ୍ତ୍ରୀମଣ୍ଡଳକୁ ନିର୍ଦ୍ଦେଶ ଦେଲେ । ମନ୍ତ୍ରୀମାନେ ତାଲିକା ପ୍ରସ୍ତୁତ କରି ତାଙ୍କ ଅନୁମୋଦନ ପାଇଁ ତାଙ୍କୁ ଦେଲେ । ସେ ତାଲିକା ପଢ଼ି କହିଲେ, "ଆପଣମାନେ ଚନ୍ଦ୍ରପୁରର ରାଜା ଆଦିତ୍ୟକୁମାରଙ୍କ ନାମ ଏଥିରୁ ବାଦ୍ ଦେଲେ କାହିଁକି ?"

ରାଜାଙ୍କ ଏ ପ୍ରଶ୍ନ ମନ୍ତ୍ରୀମାନଙ୍କୁ ବିସ୍ମିତ କଲା । ସେମାନେ ସଙ୍ଗେ ସଙ୍ଗେ ତାଲିକାରେ ଆଦିତ୍ୟକୁମାରଙ୍କ ନାମ ଯୋଡ଼ିଲେ ଓ ତାଙ୍କ ପାଖକୁ ନିମନ୍ତ୍ରଣ ଗଲା ।

ସ୍ୱୟମ୍ବର ସଭା ପୂର୍ବରୁ ରାଜା ଆଦିତ୍ୟକୁମାର ଆସି ଉପସ୍ଥିତ ହେଲେ ଓ ଯଥା ବିହି

ସମ୍ମାନ ପାଇଲେ । ଉପସ୍ଥିତ ରାଜନ୍ୟମଣ୍ଡଳୀ ଆଗରେ ରୁଦ୍ରପୁରର ଶ୍ରେଷ୍ଠ ନର୍ତ୍ତକୀମାନେ ନୃତ୍ୟ ପରିବେଷଣ କରିବା ପୂର୍ବରୁ ମୃଦୁମୃଦୁ ସଂଗୀତ ଓ ବାଦ୍ୟ ବାଜିବା ଭିତରେ ରାଜକୁମାରୀ ସଖୀମାନଙ୍କ ଗହଣରେ ସ୍ୱୟମ୍ବର ସଭାରେ ଆସି ଉପସ୍ଥିତ ହେଲେ । ମୁଖ୍ୟସଖୀ ତାଙ୍କୁ ରାଜା ଓ ରାଜକୁମାରମାନଙ୍କ ସହ ପରିଚୟ କରାଇ ଦେଉଥାନ୍ତି । ରାଜକୁମାରୀ ଯେତେବେଳେ ରାଜା ଆଦିତ୍ୟକୁମାରଙ୍କ ପରିଚୟ ପାଇଲେ, ସେ ସଲଜ୍ଜ ଭାବରେ ହସି ତାଙ୍କ କଣ୍ଠରେ ବରଣମାଳ ଦେଲେ ।

ସମସ୍ତେ ହର୍ଷିତ ହେଲେ । ରାଜା ସୌମ୍ୟଦେବ ସଙ୍ଗେ ସଙ୍ଗେ ଆସି ଭାବି-ଜାମାତାଙ୍କୁ ଅଭିବାଦନ ଓ ଆଶୀର୍ବାଦ କଲେ । ଯଥାରୀତି ବିବାହ ସମ୍ପନ୍ନ ହେଲା ଓ ସସ୍ତ୍ରୀକ ରାଜା ଆଦିତ୍ୟକୁମାର ଚନ୍ଦ୍ରଗିରି ବାହୁଡ଼ିଗଲେ ।

କେଇମାସ ବିତିଗଲା । ହଠାତ୍ ଦିନେ ରାଜା ସୌମ୍ୟଦେବ ତାଙ୍କ ସେନାପତିଙ୍କୁ ଡକାଇ କହିଲେ, "ବର୍ତ୍ତମାନ ଚନ୍ଦ୍ରଗିରି ଅଭିମୁଖେ ଯୁଦ୍ଧ ଯାତ୍ରା କରିବାକୁ ପ୍ରସ୍ତୁତ ?"

ସେନାପତି ଅବାକ୍ ହୋଇ ରହିଲେ ଓ କହିଲେ, "ମହାରାଜ ! ମୁଁ ତ ଭାବିଥିଲି ଆଉ ତା'ର ଆବଶ୍ୟକତା ନାହିଁ ବୋଲି !"

"ସେକଥା କପରି ଭାବିଲ ? ଆମ ରାଜ୍ୟର ଏକ ଅଂଶ ଅନ୍ୟାୟ ଭାବରେ ଆଉ ଏକ ରାଜ୍ୟ ଦଖଲ କରି ନେଇଛି । ଆମେ ତାକୁ ମୁକ୍ତ କରି ଆଣିବା ନାହିଁ ?" ରାଜା ପଚାରିଲେ ।



ସେନାପତି ରାଜାଙ୍କୁ କିଛି ନ କହି ସେଠାରୁ ଚାଲିଗଲେ ଓ ଯୁଦ୍ଧ ଯାତ୍ରା ସକାଶେ ପ୍ରସ୍ତୁତ ହେଲେ ।

ଚରମାନଙ୍କଠାରୁ ଏ ସମ୍ବାଦ ପାଇଲେ ରାଜା ଆଦିତ୍ୟକୁମାର । ତାଙ୍କ ଦୂତ ଆସି ରାଜା ସୌମ୍ୟଦେବଙ୍କୁ ଭେଟି ଜଣାଇଲା, ଅରଣ୍ୟର ସେ ଉପତ୍ୟକା ଏଣିକି ଚନ୍ଦ୍ରଗିରି ଅଧୀନରେ ନାହିଁ କି ସେଠାରେ ଆମର କୌଣସି ସୈନ୍ୟ ନାହାନ୍ତି । ତାହା ସବୁଦିନ ଭଳି ରୁଦ୍ରପୁରର ଅଂଶ ବିଶେଷ ।”

ରାଜା ଦୂତକୁ ସମ୍ମାନ ଜଣାଇ ଉପଯୁକ୍ତ ପୁରସ୍କାର ଦେଇ ଫେରାଇ ପଠାଇଲେ । ଯୁଦ୍ଧର ଆବଶ୍ୟକତା ନ ପଡ଼ିବାରୁ ରାଜ୍ୟବାସୀ ସମସ୍ତେ ବହୁତ ଖୁସି ହେଲେ ।

ବେତାଳ ଟିକିଏ ଚୁପ୍ ରହି ହଠାତ୍ କଣ୍ଠସ୍ୱର ତୀବ୍ର କରି ପ୍ରଶ୍ନ କଲା: “ରାଜା ! ମୋର କେତେକ ସନ୍ଦେହ ରହିଛି । ପ୍ରଥମ କଥା, ରାଜା ସୌମ୍ୟଦେବ ତାଙ୍କ ଶତ୍ରୁ ରାଜା ଆଦିତ୍ୟକୁମାରଙ୍କୁ ସ୍ୱୟମ୍ବର ପାଇଁ ନିମଂତ୍ରଣ କଲେ କିପରି ? ରାଜକୁମାରୀ ବା ତାଙ୍କୁ ବରଣ କଲେ କିପରି ? ସେ କ'ଣ ଜାଣି ନଥିଲେ ଯେ ଆଦିତ୍ୟକୁମାର ତାଙ୍କ ପିତାଙ୍କ ଶତ୍ରୁ ? ଆହୁରି ଆଶ୍ଚର୍ଯ୍ୟର କଥା ହେଲା, ଯେଉଁ ରାଜା ସୌମ୍ୟଦେବ ତାଙ୍କ କନ୍ୟା ଆଦିତ୍ୟକୁମାରଙ୍କୁ ସମର୍ପଣ କରିବାକୁ କୁଣ୍ଠାବୋଧ କଲେ ନାହିଁ, ସେ ପୁଣି ଚନ୍ଦ୍ରଗିରି ବିରୁଦ୍ଧରେ ଅଭିଯାନ ପାଇଁ କିପରି ପ୍ରସ୍ତୁତ ହେଉଥିଲେ ? ରାଜା ଆଦିତ୍ୟକୁମାର ବା ଉପତ୍ୟକା ଫେରାଇ ଦେଲେ



କାହିଁକି ? ଭୟ କରି ? ରାଜା ! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନିରୁତ୍ତର ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ସ୍ୱୟମ୍ବରର ଉଦ୍ଦେଶ୍ୟ ହେଲା କନ୍ୟାକୁ ତା' ନିଜ ସ୍ୱାଧୀନ ଇଚ୍ଛାରେ ବର ନିର୍ବାଚନର ସୁଯୋଗ ଦେବା । କନ୍ୟା-ପିତା ଯଦି ଜଣେ ଯୋଗ୍ୟ ପାତ୍ରକୁ ନ ଡାକିବେ, ତେବେ ସେ କନ୍ୟାର ସ୍ୱାଧୀନତା ସଙ୍କୁଚିତ କରିଦେଲେ ଜାଣିବାକୁ ହେବ । ସେ କ୍ଷେତ୍ରରେ ସେ ନିଜେ ବର ଠିକ୍ କଲେ ଚଳନ୍ତା । ସ୍ୱୟମ୍ବରର ଆବଶ୍ୟକତା କ'ଣ ? ବିବେକୀ ରାଜା ସୌମ୍ୟଦେବ ଜାଣିଥିଲେ ଆଦିତ୍ୟକୁମାର ତାଙ୍କ ପ୍ରତି ଅନ୍ୟାୟ କରିଥିଲେ ସୁଦ୍ଧା ଜଣେ ଦକ୍ଷ ଶାସକ ଓ ଉପଯୁକ୍ତ ପାତ୍ର । ତେଣୁ ସେ ତାଙ୍କୁ ନିମନ୍ତ୍ରଣ କଲେ । ରାଜକୁମାରୀ ବୁଦ୍ଧିମତୀ । ଶତ୍ରୁ ହୋଇଥିବା ସତ୍ତ୍ୱେ ସିଏ ବାପାଙ୍କଠୁଁ ନିମନ୍ତ୍ରଣ ପାଇଲେ, ସେ ଯେ ଜଣେ ବିଶେଷ ଯୋଗ୍ୟ ବ୍ୟକ୍ତି, ଏହା ସେ ବୁଝିଲେ ଓ ତେଣୁ ତାଙ୍କୁ ବରଣମାଳ ଦେଲେ । ରାଜା ସୌମ୍ୟଦେବ ନିଜ ରାଜ୍ୟର ରକ୍ଷକ । ଯାହା ରାଜ୍ୟର ଅଂଶ, ତାକୁ ମୁକ୍ତ କରିବା ତାଙ୍କର ଧର୍ମ । ତେଣୁ ସେ ଅଭିଯାନ ପାଇଁ ପ୍ରସ୍ତୁତ ହେଉଥିଲେ । ଇତିମଧ୍ୟରେ ରାଜା ଆଦିତ୍ୟକୁମାର ନିଜ ଭୁଲ ବୁଝି ପାରିଥିଲେ । ନିଜ ଭୁଲ ସ୍ୱୀକାର କରି ତାକୁ ସୁଧାରିବା ବିଜ୍ଞ ବ୍ୟକ୍ତିର କାମ । ରାଜା ଆଦିତ୍ୟକୁମାର ତେଣୁ ଉତ୍କଳରୁ ନିଜ ସୈନ୍ୟ ହଟାଇ ନେଲେ ଓ ପୂର୍ବପରି ତାହା ରୁଦ୍ରପୁରର ଅଂଶ ବିଶେଷ ହୋଇ ରହିବାର ପଥ ପ୍ରଶସ୍ତ କରିଦେଲେ ।"

ରାଜାଙ୍କ ଉତ୍ତର ଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା । (କଳ୍ପିତ)





## ବାସ୍ତବ ଓ କଳ୍ପନା

ରବିବାର । କାମକୁ ଯିବାକୁ ପଡ଼ିବ ନାହିଁ । ରମେଶ ଉପନ୍ୟାସ ଖଣ୍ଡିଏ ଧରି ବସିଗଲା । ମୁଗ୍‌ଧ ହୋଇ ପଢୁଛନ୍ତି । ବଡ଼ ଚିତ୍ତାକର୍ଷକ କାହାଣୀ । କେତେ କୌଶଳରେ ନାୟକ ଦୁର୍ଗର ପ୍ରାଚୀର ପରେ ପ୍ରାଚୀର ଅତିକ୍ରମ କରି ନଅର ସଂଲଗ୍ନ ଉଦ୍ୟାନ ଭିତରେ ନାୟିକା ରାଜକନ୍ୟାଙ୍କୁ ଭେଟିଛି ଓ ତାଙ୍କ ସହ ପୁଣି ଦୁର୍ଗ ବାହାରକୁ ଆସିଛି । ତା'ପରେ ଘୋଡ଼ାରେ ବସି ଓ ନାୟିକାକୁ ବସାଇ ପଳାଇ ଯାଉଛି । ଦୁର୍ଗମ ପଥ, ଅନ୍ଧକାର ରାତି । ଆଗକୁ କ'ଣ ଅଛି କିଏ କହିବ ?

ରମେଶ ଅଶନ୍ନାଃଶ୍ୱାସୀ ହୋଇ ପରବର୍ତ୍ତୀ ଘଟଣାକୁ ଅପେକ୍ଷା କରିଥାଏ । ନାୟକ ନାୟିକାକୁ ଧରି ପଳାଇଯାଇ ପାରିବ ତ ? ଘୋଡ଼ା ଯଦି ବାଟରେ ଝୁଣ୍ଟି ପଡ଼ିବ, ତେବେ କ'ଣ ହେବ ? ସେ ଅଧୀର ହୋଇ ପଢୁଥାଏ ?

ଚଟାଣ ଉପରେ ବସି ପୁଅ ସୁକୁମାର ଖେଳୁଥିଲା । ସେପଟେ ଘରେ ସ୍ତ୍ରୀ ସୁଷମା ରାନ୍ଧିବାରେ ବ୍ୟସ୍ତ ଥିଲେ । ସୁକୁମାର କେତେବେଳେ ଖେଳ ଛାଡ଼ି କାନ୍ଦିବାକୁ ଆରମ୍ଭ କରିଦେଇଥିଲା । ସୁଷମା ତା' ସ୍ୱାମୀ ଉଦ୍ଦେଶ୍ୟରେ କହିଲା, "ଶୁଣୁଛ ? ପୁଅକୁ ଟିକିଏ ଆଦର କର । ସିଏ କାନ୍ଦୁଛି କାହିଁକି ବୁଝ ।"

ରମେଶ ପାଖରୁ କିଛି ଉତ୍ତର ଶୁଣାଗଲା ନାହିଁ ।

ସୁକୁମାର ଆହୁରି ବେଶି ରଡ଼ି କରି କ… କାନ୍ଦିଲା ।

"ସେ କାହିଁକି କାନ୍ଦୁଛି ?" ସୁଷମ… ପଚାରିଲା ।

"ଭୟରେ ! ଯେମିତି ପ୍ରଚଣ୍ଡ ମେ… ଉଠାଇଛି, ଯେମିତି ସାଇଁ ସାଇଁ ପବ…

ଯେମିତି ଭୀଷଣ ଘଡ଼ଘଡ଼ ହେଉଛି, ସେଥିରେ ମୋତେ ତ ଡର ଲାଗୁଛି । ପିଲାଏ ଡରିଗଲେ ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?" ରମେଶ ଉତ୍ତର ଦେଲା ।

ଅନ୍ଧକାର ଗାଢ଼ ହୋଇ ଆସୁଛି । ବିଜୁଳି ଆଲୁଅରେ ଉପନ୍ୟାସର ନାୟକ ଅବଶ୍ୟ ବାଟ ଦେଖି ପାରୁଛି, କିନ୍ତୁ ବିଜୁଳି ଆଲୁଅ ତ ସୂର୍ଯ୍ୟାଲୋକ ବା ଚନ୍ଦ୍ରାଲୋକର ବିକଳ୍ପ ନୁହେଁ ! ରାସ୍ତା ଟିକିଏ କମ୍ ଦୁର୍ଗମ ହୋଇଥିଲେ ଭଲ ହୋଇଥାନ୍ତା । ନାୟକ ପାହାଡ଼ିଆ ରାସ୍ତାରେ ନଯାଇ ନଈକୂଳ ରାସ୍ତା ଧରିପାରିଲା ନାହିଁ ? ରମେଶ ବ୍ୟାକୁଳ ହୋଇ ପଡ଼ୁଥିଲା । ସେ ବହିକୁ ଟିକିଏ ବି ଛାଡ଼ିପାରୁ ନଥାଏ ।

ରୋଷେଇ ଘରୁ ସୁଷମା ଆସି ବଲ ବଲ କରି ରମେଶ ଆଡ଼େ ଅନାଇଲା ।

"ଝରକା ବନ୍ଦ କରିଦିଅ ! ସୁକୁମାର କାନ୍ଦିବା ବନ୍ଦ କରିଦେବ ।" ରମେଶ ଏତିକି କହି ପୁଣି ବହିରେ ମନଦେଲା ।

ସୁଷମା କିଛି ନ କହି ଝରକା ବନ୍ଦ କରିବା କ'ଣ, କବାଟ ଖୋଲି ପୁଅକୁ ଟେକି ନେଇ ବାରଣ୍ଡାରେ ଠିଆ କରାଇଦେଲା । ସୁକୁମାରର କାନ୍ଦଣା ବନ୍ଦ ହୋଇଗଲା । ସୁଷମା ଆସି ରମେଶ ଆଗରେ ଠିଆ ହେଲା । ରମେଶ ବହି ପଢୁଥାଏ । ପାଞ୍ଚମିନିଟ ଗଲା । ଗୋଟିଏ ପରିଚ୍ଛେଦ ଶେଷ ହେଲା । ସେତେବେଳେ ଯାଇ ରମେଶ ମୁହଁ ଟେକି ସୁଷମାକୁ ଦେଖିଲା ଓ ହସି ପଚାରିଲା, "କ'ଣ କହୁଛ ? ଆରେ, ଝରକା କବାଟ ସବୁ କ'ଣ ଖୋଲି ? ସୁକୁମାର କାହିଁ ?"

ସୁଷମା କିଛି କହିଲା ନାହିଁ । ରମେଶ ବାରଣ୍ଡାକୁ ଅନାଇ ଦେଖିଲା, ବାହାରେ ସଫା ସୂର୍ଯ୍ୟାଲୋକ । ସୁକୁମାର ପବନରେ ଦୋହଲୁଥିବା ଫୁଲଟିଏ ଆଡ଼େ ଅନାଇଛି ।

ରମେଶ ଲଜ୍ଜିତ ହୋଇ ବସିଲା ଓ କହିଲା, "ଆରେ, ଉପନ୍ୟାସରେ ଭୀଷଣ ଝଡ଼ ଓ ଘଡ଼ଘଡ଼ିର ବର୍ଣ୍ଣନା ପଢୁ ପଢୁ ମୁଁ ଭାବିଲି ସତରେ ଝଡ଼ ହେଉଛି । ଆଶ୍ଚର୍ଯ୍ୟ କଥା ତ !"



# କୋଚିନ୍‌ର ବିଶେଷତ୍ୱ

ଇତିହାସର ବିରଳ ଅଧ୍ୟାୟର ସ୍ମୃତି ବହନ କରେ କେରଳର ପ୍ରାଚୀନ ସହର କୋଚିନ୍ । ଏହିଠାରେ ୟିହୁଦିମାନେ ସେମାନଙ୍କର ପ୍ରାଚୀନ ବସତି ସ୍ଥାପନ କରିଥିଲେ । ସେମାନଙ୍କର ମନ୍ଦିରକୁ ସିନାଗୋଗ କୁହାଯାଏ । ଚିତ୍ରିତ ନୀଳ ଓ ଧଳା ଚୀନା ପଥରରେ ଏ ମନ୍ଦିର ଶୋଭିତ ।





ପର୍ତ୍ତୁଗୀଜ୍‌ମାନେ ପ୍ରଥମେ କାଲିକଟ୍‌ରେ ପହଞ୍ଚି ତା'ପରେ ଆସି ଏଠାରେ ପହଞ୍ଚିଥିଲେ — ଭାସ୍କୋଡାଗାମାଙ୍କ ନେତୃତ୍ୱରେ । ଭାସ୍କୋଡାଗାମା ଏଠାକାର ଲୋକଙ୍କ ଉପରେ ବହୁତ ଅତ୍ୟାଚାର କରିଥିଲେ । ସେ ଆବିଷ୍କାରକର ଉତ୍ସାହ ନେଇ ଆସି ନଥିଲେ, ଆସିଥିଲେ ଖାସ୍ ବେପାର ଓ ଲୁଣ୍ଠନ ପାଇଁ ।

ଏଠାରେ ଅବସ୍ଥିତ ସେଣ୍ଟ୍ ଫ୍ରାନ୍‌ସିସ୍ ଗୀର୍ଜା ଭାରତରେ ପ୍ରଥମ ୟୁରୋପୀୟ ଗୀର୍ଜା । ପର୍ତ୍ତୁଗୀଜ୍‌ମାନଙ୍କ କାଳରେ ଏହା ଥିଲା ରୋମାନ୍ କ୍ୟାଥୋଲିକ ଗୀର୍ଜା । ଡଚ୍‌ମାନେ ଏହାକୁ ପ୍ରୋଟେଷ୍ଟାଣ୍ଟ୍ ଗୀର୍ଜାରେ ପରିଣତ କଲେ । ଇଂରେଜ୍‌ମାନେ ଆସି ଏହାକୁ ଏଙ୍ଗ୍‌ଲିକନ୍ ଗୀର୍ଜା ବନାଇଦେଲେ । ବର୍ତ୍ତମାନ ଏହା ଦକ୍ଷିଣ ଭାରତର ଗୀର୍ଜା ସଂଘର ଅନ୍ତର୍ଭୁକ୍ତ ।





ଏଠାରେ ଅଛି 'ଡଚ୍ ନଅର' ନାମକ କୋଠା । ବାସ୍ତବରେ ଏହା ଡଚ୍ ନୁହେଁ କି 'ନଅର' ନୁହେଁ । ପର୍ତ୍ତୁଗୀଜ୍‌ମାନେ ଷୋଡ଼ଶ ଶତାବ୍ଦୀରେ ଏହାକୁ ନିର୍ମାଣ କରି କୋଚିନ୍ ରାଜାଙ୍କୁ ଉପହାର ଦେଇଥିଲେ । ଏହାର କାନ୍ଥରେ ରହିଛି ରାମାୟଣର ଚିତ୍ରାବଳି ।

ଶୁଣାଯାଏ ୟିହୁଦୀମାନେ ଏଠି ଆସି ପହଞ୍ଚିଥିଲେ ରାଜା ସୋଲେମନ୍‌ଙ୍କ ବାଣିଜ୍ୟପୋତରେ । ସେମାନେ ଏଠାରେ ଚିରଦିନ ଶାନ୍ତିରେ ରହୁଥିଲେ । ସ୍ଥାନୀୟ ରାଜା ସେମାନଙ୍କ ପ୍ରତି ସହାନୁଭୂତିଶୀଳ ଥିଲେ ଓ ସ୍ଥାନୀୟ ଲୋକେ ସେମାନଙ୍କ ସହିତ ସଦ୍‌ଭାବ ରକ୍ଷିଥିଲେ ।





ୟିହୁଦି ସିନାଗୋଗ୍‌ର ଅଭ୍ୟନ୍ତରରେ ଅନେକ ସୁନ୍ଦର ଦର୍ଶନୀୟ ବସ୍ତୁ ରହିଛି । ଇସ୍ରାଏଲ୍ ରାଜ୍ୟ ସ୍ଥାପନ ହେବା ପରଠାରୁ କୋଚିନ୍‌ର ଅଧିକାଂଶ ୟିହୁଦି ଅବଶ୍ୟ ସେଠାକୁ ଚାଲିଗଲେଣି । ଯେଉଁମାନେ ଅଛନ୍ତି, ସେମାନେ ସିନା-ଗୋଗ୍‌କୁ ଭଲ ଭାବରେ ରଖିଛନ୍ତି ।

ସ୍ଥାନୀୟ ହିନ୍ଦୁ ମନ୍ଦିରମାନଙ୍କର ଗଠନ ବଡ଼ ବିଚିତ୍ର । ଏ ଚିତ୍ରରେ ସେ ବୈଚିତ୍ର୍ୟର ଏକ ନମୁନା ଦେଖାଯାଉଛି । ଯୁଗ ଯୁଗ ଧରି କୋଚିନ୍ ହିନ୍ଦୁ, ୟିହୁଦି, ମୁସଲମାନ ଓ ଖ୍ରୀଷ୍ଟିଆନ ମାନଙ୍କ ଭିତରେ ଶାନ୍ତିପୂର୍ଣ୍ଣ ସହାନୁଭୂତିର କ୍ଷେତ୍ର ହୋଇ ଆସିଛି ।





କିମ୍ବଦନ୍ତି ଅନୁସାରେ ପ୍ରଥମ ଶତାବ୍ଦୀରେ ଯେତେବେଳେ ଯୀଶୁଖ୍ରୀଷ୍ଟଙ୍କର ଅନ୍ୟତମ ପ୍ରତ୍ୟକ୍ଷ ଶିଷ୍ୟ ସେଣ୍ଟ ଥୋମାସ୍ ଆସି ମାଲାବାର ଉପକୂଳରେ ପହଞ୍ଚିଥିଲେ, ସେତେବେଳେ ତାଙ୍କୁ ସ୍ୱାଗତ ଜଣାଇଥିଲା ଜଣେ ୟିହୁଦି ବାଳିକା । ସେ ଯୁଗରେ ଭାରତ ଭୂମିରେ ଭିନ୍ନ ଭିନ୍ନ ମତବାଦ ଭିତରେ ଦ୍ୱନ୍ଦ ହେଉ ନଥିଲା ।

କୋଚନ୍‌ର ସାମୁଦ୍ରିକ ଦୃଶ୍ୟ ଅତି ମନୋରମ । ଏ ସହର ଛୋଟ ହେଲେ ମଧ୍ୟ ଐତିହ୍ୟପୂର୍ଣ୍ଣ ଓ ସୁନ୍ଦର । ଏହା ସର୍ବଦା କର୍ମମୁଖର ରହୁଛି । ପ୍ରାଚୀନ ଇମାରତମାଳା ସହ ଆଧୁନିକ କଳ କାରଖାନା ବି ଏଠାରେ କମ୍ ନାହିଁ ।






ପ୍ରାଚୀନ ଚୀନା ମାଛଧରା ଜାଲ କୋଚିନର ଅନେକ ପ୍ରକାର ଦୃଶ୍ୟାବଳୀର ଅନ୍ୟତମ । ସ୍ଥାନୀୟ ଧୀବରମାନଙ୍କ ଦ୍ୱାରା ତାହା ବହୁକାଳରୁ ବ୍ୟବହୃତ ହୋଇ ଆସୁଛି । ଅବଶ୍ୟ କ୍ରମେ ଆଧୁନିକ ମାଛଧରା ସାଜ ସରଞ୍ଜାମ ପ୍ରଚଳନ ହେବାକୁ ଆରମ୍ଭ କଲଣି । କିଛିଦିନ ପରେ ହୁଏତ ସେ ପୁରୁଣା ଜାଲ ଅଦୃଶ୍ୟ ହୋଇଯିବ ।



# ଆଗନ୍ତୁକା

ଅନେକ ପୂର୍ବ କାଳର କଥା । ଚୀନ ଦେଶରେ ଝୋଙ୍ଗ୍ ନାମକ ଯୁବକ ଥିଲା । ସେ କେବେ ତା'ର ମା'କୁ ହରାଇଥିଲା, ସେ ବିଷୟରେ ତା'ର କୌଣସି ହେତୁ ନଥିଲା । ପିଲାବେଳଠୁଁ ତା' ବାପା ତାକୁ ବଢ଼ାଇଥିଲେ । ବାପା ଥିଲେ ସତ୍ ମଣିଷ । ସେ ଝୋଙ୍ଗ୍‌କୁ ଶିଖାଇଥିଲେ କି କୌଣସି ଅବସ୍ଥାରେ, କୌଣସି କାରଣରୁ ମିଥ୍ୟାର ଆଶ୍ରୟ ନେବା ଉଚିତ୍ ନୁହେଁ କି ଅନ୍ୟ ପ୍ରତି ନିଷ୍ଠୁର ଆଚରଣ କରିବା ଉଚିତ ନୁହେଁ ।

ଝୋଙ୍ଗ୍ ମଧେ ମଧେ ତା' ମା'ଆର ସମାଧି ପାଖକୁ ଯାଇ ବସୁଥାଏ । ଗରିବ ସ୍ତ୍ରୀ ଲୋକ । ସମାଧିରେ ବା ବିଶେଷତ୍ୱ କ'ଣ ଥାନ୍ତା ? ଝୋଙ୍ଗ୍ ଭାବୁଥାଏ, ମା'ର ସମାଧି ଉପରେ ଗୋଟାଏ ଘର ତୋଳିପାରନ୍ତା ହେଲେ !

କିଛିଦିନ ପରେ ତା'ର ବାପା ମରିଗଲେ । ସେ ମାଆର ସମାଧି ପାଖରେ ବାପାର ସମାଧି ଦେଲା । କିନ୍ତୁ ତା'ପରେ ସେ ଭାବିଲା, "ଯଦି ଦୁଇଜଣଙ୍କ ସମାଧି ଉପରେ ଗୋଟିଏ ସମାଧି ମନ୍ଦିର ନ ତୋଳିପାରିବି, ତେବେ ମୁଁ ମୋଟେ ଯୋଗ୍ୟ ପୁଅ ନୁହେଁ ।"

କିନ୍ତୁ ସମାଧି ମନ୍ଦିରଟିଏ ତୋଳିବା ନିମନ୍ତେ ବେଶ୍ କିଛି ଅର୍ଥ ପ୍ରୟୋଜନ । ସେ ତାହା ପାଇବ କେଉଁଠୁ ? ତା' ମୁଣ୍ଡକୁ ଗୋଟାଏ ବୁଦ୍ଧି ଆସିଲା । ସେ ନିଜ ଛାତିରେ ଗୋଟାଏ ଲେଖା ଝୁଲାଇ ସହର ଭିତରେ ରାସ୍ତାକଡ଼ରେ ଯାଇ ବସିଲା । ସେଥିରେ ସେ ଲେଖିଥିଲା କି କ୍ରୀତଦାସ ରୂପେ ସେ ଆଜୀବନ କାହାରି ପାଖରେ କାମ କରିବାକୁ ପ୍ରସ୍ତୁତ । କିନ୍ତୁ ସେଥିପାଇଁ ତାକୁ ଯଥେଷ୍ଟ ମୂଲ୍ୟ ଅଗ୍ରୀମ ଦେଇ ସେ ତା' ବାପା ମା'ଙ୍କ ସମାଧି ମନ୍ଦିର ନିର୍ମାଣ କରିସାରିବା ପର୍ଯ୍ୟନ୍ତ ଅପେକ୍ଷା କରିବା ଆବଶ୍ୟକ ।



ସେ ସବୁଦିନ ଯାଇ ସେଠାରେ ବସେ । ଏଣେ କାମଦାମ ନ କରିବାରୁ ଖିଆପିଆ ନିମନ୍ତେ ଯେତିକି ଉପାର୍ଜନ ହେବା ଦରକାର ସେତିକି ପଇସା ବି ସେ ଆୟ କରିପାରେ ନାହିଁ । ତେଣୁ ତାକୁ ପ୍ରାୟ ଉପାସ ରହିବାକୁ ପଡ଼େ । କିନ୍ତୁ ଯେତେ ହାଲିଆ ହୋଇପଡ଼ିଲେ ବି ସେ ହତୋତ୍ସାହ ହୁଏ ନାହିଁ । ସର୍ବଦା ପିତାମାତାଙ୍କ ଆତ୍ମାକୁ ସ୍ମରଣ କରୁଥାଏ ଓ ଧୈର୍ଯ୍ୟ ଧରି ରହିଥାଏ ।

ଦିନେ ଜଣେ ଜମିଦାର ଆସି ତା' ସର୍ତ୍ତ ପଢ଼ିଲେ ଓ ତା' ଆଡ଼େ କିଛି ସମୟ ଅନାଇ ରହି ତାକୁ ସେ ଗୃହିବା ଅନୁସାରେ ଅର୍ଥ ଦେଇଦେଲେ । ଢୋଙ୍ଗ୍ ଖୁସି ହୋଇ ତାଙ୍କୁ ଧନ୍ୟବାଦ ଦେଇ ସମାଧି ନିର୍ମାଣ କାମରେ ଲଗିଗଲା । ତା'ର ଆନ୍ତରିକତା ଯୋଗୁଁ ମିସ୍ତ୍ରୀମାନେ ଯେତେ ସମ୍ଭବ କମ୍ ପଇସା ନେଇ ତା' କାମ କରିଦେଲେ । ସମାଧି ନିର୍ମାଣ ଶେଷ ହେଲା । ଢୋଙ୍ଗ୍ ସେଠାରେ ସାତ ଦିନ ବସି ରହି ଧ୍ୟାନ କଲା । ପରଦିନ, ସର୍ତ୍ତ ଅନୁସାରେ ସେ ଯାଇ ତା' ଖାଉନ୍ଦ ଘରେ ପହଞ୍ଚିଗଲା । ଗାଁ ବାହାରେ ସେ ଜମିଦାରଙ୍କର ଗୋଟାଏ ଭଙ୍ଗାଘର ପଡ଼ି ରହିଥାଏ । ଢୋଙ୍ଗ୍‌କୁ ଜମିଦାର ସେହି ଘରେ ରହିବାକୁ କହିଲେ ଓ କ୍ଷେତରେ କାମ ଦେଲେ ।

ଢୋଙ୍ଗକୁ ନିଜେ ରୋଷେଇ କରି ଖାଇବାକୁ ପଡୁଥାଏ । ତାକୁ ଯେଉଁ ଖାଦ୍ୟପଦାର୍ଥ ଜମି-ଦାରଙ୍କ ଘରୁ ଯୋଗାଇ ଦିଆ ହେଉଥିଲା, ତାହା ଅତି ସାଧାରଣ । ଅଥଚ ତାକୁ ଯେତେ ସମୟ କ୍ଷେତରେ ହାଡ଼ଭଙ୍ଗା ପରିଶ୍ରମ କରିବାକୁ ପଡୁଥିଲା, ସେଥିପାଇଁ ସେ ଖାଦ୍ୟ ଯଥେଷ୍ଟ ନୁହେଁ । ଫଳରେ ଦିନେ ସେ ଅସୁସ୍ଥ ହୋଇ ପଡିଲା । ଜମିଦାର ତା'ର ଆରୋଗ୍ୟ ଦିଗରେ କିଛି କରିବା ପରିବର୍ତ୍ତେ ଖାଲି ସେ କେବେ ସୁସ୍ଥ ହୋଇ ପୁଣି କ୍ଷେତକୁ କାମ କରିବାକୁ ଯିବ, ସେହି ଖବର ନେଉଥାନ୍ତି ।

ଢୋଙ୍ଗ୍ ମନେ ମନେ ବଡ଼ କଷ୍ଟ ପାଉଥାଏ । କାରଣ ସେ ଅନେକ ଦିନ ଧରି ତା' ବାପା ମା'ଙ୍କ ସମାଧି ଦେଖିବାକୁ ଯାଇପାରି ନଥିଲା, ଏଣେ ଜମିଦାରଙ୍କ କାମରେ ହେଳା କରୁଥିଲା ।



ଦେହର କଷ୍ଟ ଅପେକ୍ଷା ତା' ମନର କଷ୍ଟ ବଢ଼ିଗଲା ।

ମଝି ରାତିରେ ହଠାତ୍ ତା'ର ନିଦ ଭାଙ୍ଗିଗଲା । ତା'ର ମନେ ହେଲା, କେହି ଜଣେ ତା' ଦେହରେ ହାତ ବୁଲାଇ ଦେଉଛି । ସେ ଧିରେ ଧିରେ ଆଖି ଖୋଲି ଅନାଇଲା । ଯାହା ଦେଖିଲା, ତାହା ପ୍ରଥମେ ସ୍ୱପ୍ନ ବୋଲି ତା'ର ମନେ ହେଲା । ଜଣେ ସୁନ୍ଦରୀ ଯୁବତୀ ତା' ଦେହରେ ହାତ ବୁଲାଇ ଦେଉଥିଲା । ଦୋଙ୍ଗ୍ ଅନାଇବାରୁ ଯୁବତୀ କହିଲା, "ଚିନ୍ତା ନାହିଁ । ତମେ ଭଲ ହୋଇଗଲଣି ।" ସତରେ ଦୋଙ୍ଗ୍ ଅନୁଭବ କଲା, ତା' ଜ୍ୱର ତ ଛାଡ଼ି ଯାଇଛି, ସେ ଦେହରେ ଅପୂର୍ବ ବଳ ବି ପାଇଛି ।

"ଉଠ, ଖାଇବ ।" ଯୁବତୀ କହିଲା । କେତେବେଳେ ସେ ଯୁବତୀ ଅତି ସୁସ୍ୱାଦୁ ଖାଦ୍ୟଦ୍ରବ୍ୟ ପ୍ରସ୍ତୁତ କରି ରଖିଥିଲା । ଦୋଙ୍ଗ୍ ତାକୁ ଖାଇ ଏପରି ସନ୍ତୋଷ ଲାଭ କଲା, ଯାହା ସେ ଜୀବନରେ ପାଇ ନଥିଲା ।

ଦୋଙ୍ଗ୍ ପ୍ରଥମେ ଭାବିଥିଲା, ତା'ର ମତିଭ୍ରମ ହୋଇଛି । ପରେ ଯେତେବେଳେ ସେ ବୁଝିଲା ଯେ ସେ ଯାହା ଦେଖୁଛି ତାହା ବାସ୍ତବ, ତା'ର ବିସ୍ମୟର ସୀମା ରହିଲା ନାହିଁ । ସକାଳ ହେବା ମାତ୍ରେ ସେ କାମକୁ ବାହାରିଗଲା । ସେ ଫେରି ଆସିବା ବେଳକୁ ଘର ସଫା ସୁତୁରା ହୋଇ ରହିଛି; ଜାତିରେ କେତେ ପ୍ରକାର ରନ୍ଧା ହୋଇଛି । କେତେକ ମଧ୍ୟ ହୋଇଛି ।

"ଶୁଣ!" ଯୁବତୀ କହିଲା, "ମୋ ନାମ ତ । ଏହାଠୁଁ ଅଧିକା ଆଉ କିଛି ତୁମର ଜାଣିବା ଦରକାର ନାହିଁ । ଆମେ ବିଭ ହେବା ଚାଲ ।"

ଦୋଙ୍ଗ୍ ଚମକି ପଡ଼ିଲା । ସେ କହିଲା, "କିନ୍ତୁ..."

ଯୁବତୀ କହିଲା, "ଚଳିବା ପାଇଁ ଚିନ୍ ନାହିଁ । ମୁଁ ତା'ର ବ୍ୟବସ୍ଥା କରିବ ।"

ଦୋଙ୍ଗ୍ ପୁଲକିତ ହେଲା । ଦୁହେଁ ବି ହେଲେ । ଦୋଙ୍ଗ୍ ସବୁଦିନ କ୍ଷେତରୁ ଫେ ଦେଖେ, ତ ରେଶମ ଲୁଗା ଉପରେ ଅ ସୁନ୍ଦର ସୂଚୀ ଶିଳ୍ପ କରୁଛି । ସେସବୁ ଲ ବହୁତ ଦାମରେ ବିକି ହେବାକୁ ଲାଗିଲା ।

ସଙ୍ଗେ ସଙ୍ଗେ ସେସବୁ ବଢ଼ି ହୋଇ ଯାଉଥାଏ ।

ଦିନେ ଚୋଙ୍ଗ୍ କ୍ଷେତରୁ ଫେରିବା ମାତ୍ରେ ଚ ହସି ହସି କହିଲା, "ତମେ ଆଉ କ୍ଷେତକୁ ଯିବା ଦରକାର ନାହିଁ ।"

"କାହିଁକି ?" ଚୋଙ୍ଗ୍ ପଚାରିଲା ।

ଚ ତାକୁ ଖଣ୍ଡିଏ କାଗଜ ଦେଖାଇଲା । ଜମିଦାର ତାଙ୍କର ସମସ୍ତ ଟଙ୍କା ଫେରିପାଇ ଚୋଙ୍ଗ୍‌କୁ କ୍ରୀତଦାସତ୍ୱରୁ ମୁକ୍ତ ଦେଇଥିଲେ ।

ଚୋଙ୍ଗ୍ ଆନନ୍ଦରେ କଥା କହିପାରିଲା ନାହିଁ । ଦୁହେଁ ଚୋଙ୍ଗ୍‌ର ଗାଁକୁ ଫେରିଗଲେ । ଯୁବତୀ ଉପାର୍ଜନ କରିଥିବା ଅର୍ଥରେ ସେମାନେ ଗୋଟାଏ ସୁନ୍ଦର ଘର ତିଆରି କଲେ ।

କିଛିଦିନ ପରେ ଚ ଗୋଟିଏ ପୁଅ ସନ୍ତାନ ଜନ୍ମ ଦେଲା । ପ୍ରତିବେଶୀମାନେ କହିଲେ, "ଏ ଶିଶୁ ମଣିଷ ନୁହେଁ, ମଣିଷରୂପୀ କୌଣସି ଗନ୍ଧର୍ବ ।"

ଚୋଙ୍ଗ୍ ସନ୍ଧ୍ୟାବେଳେ ଘରକୁ ଫେରି ଆଶ୍ଚର୍ଯ୍ୟ ହୋଇ ଦେଖିଲା, ଚ ଦେଖାଯାଉଛି ଅପୂର୍ବ । ତା' ମୁଖମଣ୍ଡଳରୁ ନିର୍ଗତ ହେଉଛି ଏକ ପ୍ରକାର ଆଲୋକ ।

ଚ କହିଲା, "ଏଥର ଗଲି !"

"କୁଆଡ଼େ ?" ଚୋଙ୍ଗ୍ ବିସ୍ମୟରେ ଏପରି ପଚାରିଲା ।

ଚ ହସିଲା ଓ କହିଲା, "ମୁଁ ମଣିଷ ନୁହେଁ । ମୁଁ ଜଣେ ଅପ୍ସରା । ତୁମର ଏପରି ପିତୃଭକ୍ତି ମାତୃଭକ୍ତିରେ ମୁଗ୍ଧ ହୋଇ ପିତୃଲୋକର ଦେବତା ମୋତେ ତୁମକୁ କ୍ରୀତଦାସତ୍ୱରୁ ଉଦ୍ଧାର କରିବା ନିମନ୍ତେ ଏଠାକୁ ପଠାଇଥିଲେ । ଏ ପୁଅ ରହିଲା । ଏହାକୁ ନେଇ ସୁଖରେ ଓ ସତ୍ ପଥରେ ରହିଥାଅ ।"

ଚୋଙ୍ଗ୍ କିଛି କହିବା ପୂର୍ବରୁ ଚ ଧିରେ ଧିରେ ଅନ୍ତର୍ହିତା ହୋଇଗଲା ।








କ୍ରମେ କୃଷ୍ଣ ବଡ଼ ହେଉଥା'ନ୍ତି ଓ ତାଙ୍କର ଦୁଷ୍ଟାମୀ ମଧ୍ୟ ବଢ଼ି ଚାଲିଥାଏ । ତାଙ୍କର ଚଞ୍ଚଳ ସ୍ୱଭାବ, ଚପଳତା ଓ ଦୁଷ୍ଟାମୀ ଯୋଗୁ ଗୋପପୁରର ଲୋକେ ହଇରାଣ ହେଲେ । କିନ୍ତୁ ତାଙ୍କ ଭିତରେ ଏପରି ଏକ ଶକ୍ତି ଥିଲା ଯାହା ଯୋଗୁ ସମସ୍ତେ ହଇରାଣ ହୋଇଥିବାର କଷ୍ଟ ଭୁଲିଯାଇ ପୁଣି କୃଷ୍ଣଙ୍କ ସହିତ ଖେଳନ୍ତି । ଏସବୁ ସତ୍ତ୍ୱେ ତାଙ୍କର ଥିଲା ଏକ ଦୁର୍ବାର ଆକର୍ଷଣ । ସେ ଆକର୍ଷଣକୁ ଏଡ଼େଇ ଯିବା ଥିଲା କଷ୍ଟକର । ତଥାପି ଥରେ ଗୋପୀମାନେ ଏକତ୍ରିତ ହୋଇ ମାତା ଯଶୋଦାଙ୍କ ପାଖକୁ ଗଲେ କୃଷ୍ଣଙ୍କର ଦୁଷ୍ଟାମୀ ବିଷୟରେ ଅଭିଯୋଗ କରିବାକୁ ।

ସେମାନଙ୍କ ମଧ୍ୟରୁ ଚମ୍ପା ନାମକ ଜଣେ ଗୋପୀ କହିଲା, "ନନ୍ଦରାଣୀ, ତୁମର ପୁଅ କ'ଣ ସଂସାରରେ ଖାଲି ଗେହ୍ଲା? ଅନ୍ୟ ପିଲାମାନେ ବି ତାଙ୍କ ମା' ମାନଙ୍କର ଗେହ୍ଲାପୁଅ । କିନ୍ତୁ ସେମାନେ ଦୁଷ୍ଟାମୀ କରିବାକୁ ଟିକିଏ ଭୟ ପାଇଲେ ତୁମ ପୁଅ ସମସ୍ତିଙ୍କୁ ନିର୍ଭୟ ଦେଇ ସାଙ୍ଗରେ ଧ ସମସ୍ତିଙ୍କ ଘରେ ପଶୁଛି, ଦୁଧ, ଦହି, ଲହୁଣି ଚୋରି କରୁଛି, ପୁଣି ହାଣ୍ଡି ସବୁ ବାଡ଼େଇ ଫୋପାଡ଼ି ଦେଇ ଚାଲି ଆସୁଛି । ଏତେ ଷ କିଏ କେତେ ସହିବ? ପିଲା ବୋଲି ଘ ମୁଁ କିଛି କହୁ ନଥିଲି ହେଲେ ସେ ଏତେ ଉତ୍ପାତ କରୁଛି ଯେ ମୁଁ ଆଉ ସମ୍ଭାଳି ପାରୁନାହିଁ, ତେବେ ତୁମ ପୁଅକୁ ଟିକି ଆକଟରେ ରଖ, ଆମ ଉପରେ ଟିକି ଦୟାକର ।"



କରୁଛୁ । ଘରେ ପଶି ହାଣ୍ଡି ମାଠିଆ ଭାଙ୍ଗିବାରୁ ମୁଁ ଲହୁଣୀଯାକ ନେଇ ଶିକାରେ ଟଙ୍ଗାଇଥିଲି । ଆଜ ତମର କୀର୍ତ୍ତିମାନ ପୁଅ ସାଙ୍ଗସାଥୀ ନେଇ ଜଣକ ପରେ ଜଣେ ଚଢ଼ି ସବୁ ଭାଙ୍ଗି ସାରିଲେଣି । ଦିନକୁ ଦିନ ତା'ର ଦୁଷ୍ଟାମୀ ଏଭଳି ଭାବରେ ବଢ଼ୁଛି ଯେ ଆମେମାନେ ଦିନେ ନା ଦିନେ ଏଇ ଗୋକୁଳ ଛାଡ଼ି ପଳାଇବା ।"

ଏଇ ସମୟରେ ରତ୍ନା ନାମ୍ନୀ ଅନ୍ୟ ଏକ ଗୋପୀ ଆସି ଯଶୋଦାଙ୍କୁ କହିଲା, "ନନ୍ଦରାଣୀ, ତମ ପୁଅ ରାଜପୁତ୍ର ବୋଲି କିଛି ଆମେ କରିପାରୁ ନାହୁଁ । ତମେ ମା' ବାପ ଯଦି ପୁଅକୁ ଆକଟରେ ନ ରଖିବ ଆମେ କ'ଣ କରିବୁ । ଆଜି ଆମ ଘରେ ମୁଁ ତାଲା ଦେଇ ଯାଇଥିଲି, କିନ୍ତୁ କୃଷ୍ଣ ତା'ର ସାଙ୍ଗ ସାଥି ଧରି ଆସି ତାହା ସବୁ ଲହୁଣୀ, ଖାଇ ଯାଇଛି ପୁଣି ସବୁ ହାଣ୍ଡି ଭାଙ୍ଗି ବଲେଇମାନଙ୍କୁ ଖୁଆଇଛି । ସେତିକରେ ସେ ଶାନ୍ତ ନ ହୋଇ ଯିବାବେଳେ ବାଛୁରିମାନଙ୍କୁ ଖୋଲି ଦେଇଛି ଯେ ବାଛୁରିମାନେ ସବୁ ଦୁଧ ଗାଈଠାରୁ ପିଇ ଯାଇଛନ୍ତି । ଏବେ ଆମେ କରିବୁ କ'ଣ ? ଯିବାବେଳେ କହିଗଲା, "ବାଛୁରିମାନଙ୍କୁ କାହିଁକି କଷ୍ଟ ଦେଉଛ? ଦେଖ ସେମାନେ ଗାଈମାନଙ୍କଠାରୁ ଦୁଧ ପିଇବା ବେଳେ କେତେ ଆନନ୍ଦ ହେଉଛନ୍ତି, ଆଉ ଗାଈମାନେ ମଧ୍ୟ କେତେ ଆନନ୍ଦ

ଏବେ ତମ୍ପାର କଥା ଶେଷ ନ ହେଉଣୁ ମାଳତୀ ନାମକ ଅନ୍ୟ ଏକ ଗୋପୀ ଆସି ନିଜର ଗୁହାରି ଜଣାଇଲା । "ଆଗୋ ନନ୍ଦରାଣୀ, ତୁମର ଗେହ୍ଲା କହ୍ନେଇ ଆଜି ଆମ ଘରେ ପଶି ଦହି, ଦୁଧ, ଲବଣୀ ସବୁ ଖାଇ ହାଣ୍ଡି ମାଠିଆ ଭାଙ୍ଗି ପଳାଇଛି । ଆମେ ତ ତୁମପରି ଧନୀ ନୁହଁ । ଗରିବର ସମ୍ବଳ ଠିକକ ଗଲା ଆଉ ଆମେ ଉପାସ ରହିବୁ । ନା ଖାଇବାକୁ କିଛି ବଳିଛି ନା ବିକିବାକୁ କିଛି ।"

ତା'ପରେ ରମା ନାମ୍ନୀ ଅନ୍ୟ ଏକ ଗୋପୀ କାନ୍ଦି କାନ୍ଦି କହିଲା, "ମାଗୋ, ଏଡ଼େ ଟିକିଏ ଛୁଆ କପରି ଏତେ କଥା

ହେଉଛନ୍ତି, ତମକୁ କ'ଣ ଏସବୁ ଭଲ ଲାଗୁନାହିଁ ? ତୁମ ପିଲାଙ୍କୁ କେହି ବାନ୍ଧି ରଖିଲେ ତୁମକୁ କପରି ଲାଗିବ ? ଏବେ ତମେ ଓଳାଏ ଦୁଧ ଦୁହିଁବ ଆଉ ଓଳାଏ ବାଛୁରିଙ୍କୁ ଛାଡିଦେବ । ମୋ କଥା ନ ରଖିଲେ ମୁଁ ନିଶ୍ଚୟ ଲଡି ଲଡି ଆସି ବାଛୁରିମାନଙ୍କୁ ପିଆଇଦେବି ।" ଏକଥା ପୁଣି ଧମକ ଦେଇ ଯାଇଛି । ନନ୍ଦରାଣୀ ଏତେ ଉତ୍ପାତ ସହିବା ଆମ ପାଇଁ କଷ୍ଟକର ଆମେ ସବୁ ଗୋକୁଳ ଛାଡ଼ି ଯାଉଛୁ । ତମେ ତମ ଗେହ୍ଲା ପୁଅ କହ୍ନେଇଯାକୁ ଧରିଥାଅ । ଏହା'ର କିଛି ପ୍ରତିକାର କର, କାରଣ ଦିନକୁ ଦିନ କୃଷ୍ଣର ଉତ୍ପାତ ବଢୁଛି; ଆମେ ଗରିବ ଲୋକ ଆମ ପକ୍ଷେ କ୍ରମେ ଏହା ଅସହ୍ୟ ହୋଇ ଉଠୁଛି ।"



ଯଶୋଦା ନୀରବରେ ସବୁ ଶୁଣିଲେ । ବିଶ୍ୱାସ ନ କରିବାର ଉପାୟ ନାହିଁ । ଘରେ ତ ଏତେ ଉତ୍ପାତ କରୁଛି ବାହାରେ ନ କରୁଥିବ କାହିଁକି । ମନଦୁଃଖ କରି ସେ କହିଲେ, "ଗୋପୀମାନେ, ତୁମର ଯାହା ଯାହା କ୍ଷତି ହୋଇଛି କୁହ, ମୁଁ ସବୁ ପୂରଣ କରିବି । ଏତେ ଟିକିଏ ମୋର ପୁଅ କୃଷ୍ଣ । ଏବେ ମଧ୍ୟ ଶିଶୁ, ଅଜ୍ଞାନ, ଜାଣି ଜାଣି କ'ଣ ସେ ଏତେ କ୍ଷତି କରୁଛି ? ତାକୁ ଆଉ ଗାଳି ଦିଅନାହିଁ, ବା ତମେମାନେ ତା' ଯୋଗୁ ଘର ଛାଡ଼ି ପଳାଇଯିବା କଥା କୁହନାହିଁ । ଆଜିଠାରୁ ମୁଁ ତାକୁ ଜବତ କରି ବାନ୍ଧି ରଖିବି । ତମେମାନେ ଯାଅ । ମୁଁ ଦେଖିବି ଆଉ କେବେ ଯେପରି ସେ ବଦମାସି କରିବ ନାହିଁ ।"

ଗୋପୀମାନେ ଚାଲିଗଲେ । ମାତା ଯଶୋଦା ରାଗ, ଦୁଃଖ ଓ ଅଭିମାନରେ ବ୍ୟସ୍ତ ହୋଇ କୃଷ୍ଣଙ୍କୁ ଡାକି କହିଲେ, "କୃଷ୍ଣ, କାହିଁ ତୁ କୁଆଡ଼େ ଗଲୁ, ଏତେ ଟିକେ ଟୋକା ପିଲା, ତୋର ଏତେ ବଦମାସି, ଆଜି ହିଁ ତୋତେ ବୁଝାଇଦେବି ଭଲପିଲା ହେବାକୁ ହେଲେ କ'ଣ ଦରକାର, ଗୋଟାଏ ବୋଲି ପୁଅ ବଦନାମରେ ମଣିଷକୁ ବ୍ୟତିବ୍ୟସ୍ତ କରି ପକାଉଛି । କୃଷ୍ଣ କୁଆଡ଼େ ଗଲୁ ହେ କୃଷ୍ଣ ।"



ପଛପଟରୁ ଦୌଡ଼ି ଆସି ମା'ଙ୍କୁ କୁଣ୍ଢାଇ ଧରି କୃଷ୍ଣ କହିଲେ, "ମା, ମୁଁ ତମ ପାଖରେ ସଦାବେଳେ ଅଛି । ତମର ମୋତେ ଡାକିବାକୁ ପଡ଼ିବ ନାହିଁ । ତମେ ଯାହା ସବୁ କହିଲ ମୁଁ ଶୁଣିଛି । ତମେ ମୋ କଥା ଶୁଣିବ ନା ସେମାନଙ୍କ କଥା ଶୁଣିବ ? ବଗୁଲି ବଲେଇ-ମାନେ, ମାଙ୍କଡ଼ମାନେ ଆଉ ମୋର ସାଥୀ ଗୋପବାଳକମାନେ ଦୁଧ ଲହୁଣୀ ଖାଇବାକୁ ପାଉ ନାହାନ୍ତି, ଆଉ ଏମାନେ ଘରେ ହାଣ୍ଡି ହାଣ୍ଡି ଭରି ରଖିବେ ? ମୁଁ କ'ଣ ଭୁଲ କଲି ? ମା' ତମେ ମୋତେ ନ ଦେଖିଲେ ଏତେ ବ୍ୟସ୍ତ ହେଉଛ ଆଉ ବାଛୁରିମାନଙ୍କୁ ଏମାନେ କଷ୍ଟ ଦେଉଛନ୍ତି, ବାନ୍ଧି ରଖୁଛନ୍ତି, ରଡ଼ ରଡ଼ି ତାଙ୍କ ତଣ୍ଟି ପଡ଼ିଗଲଣି ମୁଁ ଫିଟାଇ ଦେଇ ଭୁଲ୍ କଲି କି ? ତମେ ଯଦି ମୋତେ କିଏ ବାନ୍ଧି ରଖନ୍ତା, ମୁଁ ତମ ପାଖକୁ ଆସିବାକୁ କାନ୍ଦନ୍ତି । ତମକୁ କିମିତି ଲାଗନ୍ତା !"

"ନା, ନା, ସେମିତି କହନା କହୁଛି, ତୋତେ କେହି ମୋଠାରୁ ଦୂରରେ ରଖିଲେ ମୁଁ ମରିଯିବି ମୋ ପାଖକୁ ଆ ।" କହି ଯଶୋଦା କାନ୍ଦି ପକାଇଲେ ଓ ସବୁକଥା ଭୁଲି କୃଷ୍ଣଙ୍କୁ କୋଳକୁ ନେଲେ, କୃଷ୍ଣ କିନ୍ତୁ ହସୁଥିଲେ ।

ତା'ପରେ ଯଶୋଦା ଅନେକ ବୁଝାଇଲେ । କୃଷ୍ଣ କିନ୍ତୁ ହସୁଥିଲେ । ଯଶୋଦା ବୁଝିଗଲେ ଯେ ସେ ଯେତେ କୋମଳ କରି କହିଲେ ମଧ୍ୟ କୃଷ୍ଣ ପୁଣି ଦୁଷ୍ଟାମୀ କରିବ । ସେ କହିଲେ, "ଦେଖ୍ ପୁଅ, ତୋ ପାଇଁ ତ ଆମ ଘର ଭର୍ତ୍ତିହୋଇ ଲହୁଣୀ, ସର, ମିଠା ରହିଛି ତୁ କାହିଁକି କଥା ନ ମାନି ଅନ୍ୟମାନଙ୍କ ଘରୁ ଖାଉଛୁ ପୁଣି ତାଙ୍କର ସର୍ବସ୍ୱ ନଷ୍ଟ କରୁଛୁ । ଏତେ ବୁଝେଇଲେ ତୁ କଥା ମାନିବୁ ନାହିଁ; ପୁଣି ଛୁଆ ପଂଝାଏ ଧରି ଯା ଘରେ ତା' ଘରେ ପଶି ଗୋଳମାଳ କରିବୁ । ତୋର ବଦନାମୀ ଶୁଣି ଶୁଣି ମୋ କାନ ବଧିର ହୋଇଗଲଣି । ଏଣିକି ତୋତେ ଆଉ ମୁଁ କୁଆଡ଼କୁ ଛାଡ଼ିବି ନାହିଁ । ଏବେ ତତେ ବାନ୍ଧିକରି ରଖିବାକୁ ହେବ ।" ଏକଥା କହି ମାତା ଯଶୋଦା କୃଷ୍ଣଙ୍କୁ ଧରି ଜାମଳାର୍ଜ୍ଜୁନ ଗଛ ନିକଟକୁ ଗଲେ । ସେଠାରେ ସେ



ଦଉଡ଼ିରେ କୃଷ୍ଣଙ୍କୁ ବାନ୍ଧି ଦୁଇଟି ଗଛ ମଧ୍ୟରେ ଦଉଡ଼ିଟିର ଅନ୍ୟ ପଟଟି ଆଣି ଗୋଟିଏ ଅଣଖଲରେ ବାନ୍ଧିଦେଲେ । ସେ ଜାଣିଲେ ଯେ କୃଷ୍ଣ ମାତ୍ର ଅଳ୍ପ ସ୍ଥାନରେ ଏପଟ ସେପଟ ହୋଇପାରିବ ।

ଏଥର ମାତା ଯଶୋଦା ନିଶ୍ଚିନ୍ତ ହୋଇ ଘର କାମ କରିବାକୁ ଗଲେ । କିଛି ସମୟ ପରେ ଭୟଙ୍କର ଶବ୍ଦ କରି ଅର୍ଜୁନଗଛ ଦୁଇଟି ଟଳି ପଡ଼ିଲେ । ଆଉ ଗୋପୀଗୋପାଳମାନେ ଭୟରେ କାତର ହୋଇ ମା' ଯଶୋଦାଙ୍କ ପାଖକୁ ଦୌଡ଼ି ଆସି କହିଲେ, "ନନ୍ଦରାଣୀ, ଯାଇ ଦେଖ ତୁମ ପୁଅ ଦଉଡ଼ି ଧରି ଟାଣି ହେବାରୁ ଅଣଗଲ ଅଟକି ଯାଇ ଦୁଇଟି ଗଛ ଉପୁଡ଼ି ପଡ଼ିଲେ । ଆମେ ବୁଝିପାରୁନାହୁଁ ସେ ସେ ବିରାଟ ଗଛ ଦୁଇଟି ଉପୁଡ଼ି ପଡ଼ିବା ପରେ ତା' ଭିତରେ କୃଷ୍ଣ ବଞ୍ଚିଛି ନା ନାହିଁ । ତମେ ଶୀଘ୍ର ଦୌଡ଼ିକରି ଆସ ।"

ସମସ୍ତ ରାଗ ଅଭିମାନ ଭୁଲିଯାଇ ଯଶୋଦା ବିକଳରେ ଚିତ୍କାର କରି ଦୌଡ଼ିଲେ, ଏଡ଼େ ବଡ଼ ଗଛ ତଳେ ତାଙ୍କର ଛୋଟିଆ ପିଲାଟି ବଞ୍ଚିଛି ନା ନାହିଁ । ସେଠାରେ ପହଞ୍ଚି ଦେଖିଲେ ଦୁଇଟି ବିରାଟ ଦ୍ରୁମ ତଳେ ଉପୁଡ଼ି ପଡ଼ିଛି ମଝିରେ କୃଷ୍ଣ ବସି ହସୁଛନ୍ତି ।

ଇତମଧ୍ୟରେ ନନ୍ଦ ମଧ୍ୟ ଆସି ସେଠାରେ ପହଞ୍ଚିଲେ । ସେ ଦେଖିଲେ ସବୁଜ ରଙ୍ଗର ଗହଳ ଡାଳପତ୍ର ମଧ୍ୟରେ ପୀତାମ୍ବରଧାରୀ କୃଷ୍ଣ, ମେଘମାଳା ମଢରେ ଚନ୍ଦ୍ରମା ପରି ବିରାଜମାନ କରୁଛନ୍ତି । ବିପଦ କଟିଗଲା । ନନ୍ଦ କୃଷ୍ଣଙ୍କୁ କୋଳକୁ ନେଇ ଅନେକ ଆଦର କଲେ । ଠିକଏ ପୂର୍ବରୁ ଯେଉଁ ଗୋପୀମାନେ ତାଙ୍କ ବିରୁଦ୍ଧରେ ମାତା ଯଶୋଦାଙ୍କ ପାଖରେ ଫେରାଦ୍ ହେଉଥିଲେ ସେମାନେ କୃଷ୍ଣଙ୍କର ଏଡ଼େ ବଡ଼ ବିପଦ ଦେଖି ଦୁଃଖ କରି କହିଲେ, "ହାୟ, ଆମପାଇଁ ସିନା ଯଶୋଦା କୃଷ୍ଣଙ୍କୁ ବାନ୍ଧିଲେ । ଆଜି ଯଦି ବୃକ୍ଷ ଦୁଇଟି ବାଳକ କୃଷ୍ଣ ଉପରେ ପଡ଼ିଥା'ନ୍ତା । ଆହା ସେ ପଛକେ ଆମର ସବୁ ଲହୁଣୀ ହାଣ୍ଡି ଭାଙ୍ଗୁ ଆମେ ଆଉ କିଛି କହିବା ନାହିଁ । ତା'ର ଯଦି କିଛି ଖରାପ ହୋଇଥା'ନ୍ତା ତେବେ ଏ ଗୋପପୁରରୁ

ଲକ୍ଷ୍ମୀ ଛାଡ଼ି ଚାଲିଯାଇଥା'ନ୍ତେ । ଜନ୍ମରୁ କେତେ ଅଲୌକିକ ଘଟଣା ସେ ନ କରିଛି ?"

ତା'ର ମୋହନ ରୂପ, ସ୍ନେହଶୀଳ ସ୍ୱଭାବ, ଶିଶୁ ସୁଲଭ ଚାପଲ୍ୟରେ ଗୋପୀଗଣ ଏତେ ମୁଗ୍ଧ ହୋଇଥିଲେ ଯେ କୃଷ୍ଣଙ୍କର ଏହି ବିପଦ ପରେ ସେମାନେ ନିଜକୁ ଧିକ୍କାର କରୁ କରୁ ଓ କୃଷ୍ଣଗୁଣ ଗାନ କରୁ କରୁ ସେଠାରୁ ପ୍ରସ୍ଥାନ କଲେ । ନନ୍ଦ ଓ ଯଶୋଦା କୃଷ୍ଣଙ୍କ ସୁରକ୍ଷା ପାଇଁ ଦାନ ଯଜ୍ଞଆଦି ଅନେକ ପୁଣ୍ୟକାର୍ଯ୍ୟ କଲେ ।



କ୍ରମେ କୃଷ୍ଣ ଓ ବଳରାମଙ୍କର ବୟସ ବଢ଼ିବାକୁ ଲାଗିଲା । ଗୋପବାଳକମାନଙ୍କୁ ନେଇ ନାନା ପ୍ରକାର ଖେଳରେ ସେମାନେ ମାତିଥା'ନ୍ତି । ସେମାନଙ୍କର କାମ ହେଲା ବାଛୁରି ଜଗିବା । ବାଛୁରିମାନଙ୍କୁ ଚରିବାକୁ ଛାଡ଼ି ଦେଇ ଏମାନେ ଖେଳନ୍ତି । ମହୁଫେଣା ଭାଙ୍ଗି ମହୁ ଖା'ନ୍ତି । ବଣରୁ ନାନା ପ୍ରକାର କୋଳି ଓ ଫଳମୂଳ ତୋଳି ଖା'ନ୍ତି ।

ଦିନେ କୃଷ୍ଣ ବଳରାମଙ୍କୁ କହିଲେ, "ଭାଇ, ଦେଖ ଏଇ ଗୋକୁଳ ଗ୍ରାମ ଓ ଆଖପାଖର ବନ ଜଙ୍ଗଲ ବୃଷ୍ଟି ବିନା ମରୁଭୂମି ଭଳି ଦେଖା ଯାଉଛି ଏଠି ଆଉ ଆମ ଗାଈମାନେ କ'ଣ ଖାଇବାକୁ ପାଇବେ । ଅଦୂରରେ ଥିବା ସ୍ଥାନର ସୁନ୍ଦର ସ୍ୱଚ୍ଛ ଜଳଧାର ପୂର୍ଣ୍ଣ ଯମୁନା ନଦୀ ବହି ଯାଉଛି । ତା'ର କୂଳରେ ବରଂ ଆମ ଗୋପାଳ ସମ୍ପ୍ରଦାୟ ବସତି ସ୍ଥାପନ କରିବା । ସେହି ସ୍ଥାନର ନାମ ବୃନ୍ଦାବନ; ନିକଟରେ ଗିରି ଗୋବର୍ଦ୍ଧନ, ଚାରିଦିଗରେ ଘନ ବନ ଜଙ୍ଗଲ । ଚାଲ ଏକଥା ପିତା ନନ୍ଦଙ୍କୁ ଓ ଅନ୍ୟାନ୍ୟ ଗୋପପୁରବାସୀଙ୍କୁ କହିବା ।"

ଶ୍ରୀକୃଷ୍ଣଙ୍କ କଥା ସମସ୍ତିଙ୍କ ମନକୁ ପାଇଲା । ଏପରି ଅଭିନବ ପ୍ରସ୍ତାବ ଶୁଣି ଅନେକେ ଖୁସି ହେଲେ କିନ୍ତୁ କେତେକ ନିଜ ପୁରୁଣା ଗ୍ରାମ ଛାଡ଼ି ଯିବାକୁ ରାଜି ହେଲେ ନାହିଁ ।

ତେଣୁ ସେମାନଙ୍କୁ ଡରାଇବା ପାଇଁ ଶ୍ରୀକୃଷ୍ଣ ନିଜ ଦେହରୁ ଅନେକ ଭୟଙ୍କର ପଶୁ ସୃଷ୍ଟି କଲେ । ସେମାନଙ୍କର ଆକ୍ରମଣ ଭୟରେ ସମସ୍ତେ ବୃନ୍ଦାବନ ଯିବାକୁ ସ୍ଥିର କଲେ ।

ପ୍ରଥମେ ନନ୍ଦ ଏ ପ୍ରସ୍ତାବରେ ସମ୍ମତ ହେଉ ନଥିଲେ । କାରଣ ଆଗରୁ ଶୁଣାଯାଉଥିଲ ସେହି ପ୍ରଦେଶ ଅନେକ ରାକ୍ଷସଙ୍କ ବାସସ୍ଥଳୀ । ଚପଳମତି ବାଳକ କୃଷ୍ଣ କେବେ ଯେ ସେହି ରାକ୍ଷସମାନଙ୍କର ଆହାର ନ ହେବ କିଏ କହିବ? କାରଣ ଜନ୍ମରୁହିଁ ସୁନ୍ଦର ବାଳକ କୃଷ୍ଣର ନିଧନ ପାଇଁ ରାକ୍ଷସମାନେ ନାନା ପ୍ରକାର ଛଦ୍ମବେଶରେ ଆସି ନାନା ଉପାୟ କରିଛନ୍ତି । ଏହି ସମୟରେ ନାରଦ ସେଠାରେ ପହଞ୍ଚି ନନ୍ଦଙ୍କୁ କହିଲେ, "ରାଜନ୍, ତମେ ଏ ପ୍ରସ୍ତାବରେ ସମ୍ମତ ହଅ । ତମେ ରାକ୍ଷସ ପାଇଁ ଭୟ କରୁଛ ? କିନ୍ତୁ ତମେ କ'ଣ ଏତିକି ବୁଝିପାରୁନା ଯେ ସ୍ୱୟଂ ନାରାୟଣ ଶ୍ରୀକୃଷ୍ଣ ରୂପ ନେଇ ଧରା ଉପରେ ଅବତୀର୍ଣ୍ଣ ହୋଇଛନ୍ତି ବୋଲି ? ସେ ଜନ୍ମ ନେଇଛନ୍ତି କେବଳ ରାକ୍ଷସମାନଙ୍କୁ ବିନାଶ କରିବା ପାଇଁ । ବଳରାମ ହେଲେ ଶେଷନାଗଙ୍କ ଅବତାର । ଦୁହେଁ ମିଶି ଅନେକ ରାକ୍ଷସ ବଧ କରିବେ । ପିଲାଦିନ-ଠାରୁ କେତେ କେତେ ରାକ୍ଷସ ତାଙ୍କୁ ମାରିବାକୁ ଚେଷ୍ଟା କରିଛନ୍ତି । କିନ୍ତୁ ଫଳ କ'ଣ ହୋଇଛି ? ତେଣୁ ତମେ ମନରେ କୌଣସି ସନ୍ଦେହ ବା ଆଶଙ୍କା ନ ରଖି ପୃଥିବୀ ମାତାଙ୍କର କଷ୍ଟ ଦୂର କରିବାକୁ ଯେଉଁ ନାରାୟଣ ଅବତାର ନେଇଛନ୍ତି ସେ ବାଳକ ହେଲେ ମଧ୍ୟ ସର୍ବଦା ତାଙ୍କର କଥା ମାନି ଚଳ । ତଦ୍ୱାରା ସମସ୍ତଙ୍କର ମଙ୍ଗଳ ହେବ ।"

ନାରଦ ନନ୍ଦରାଜାଙ୍କୁ ଏସବୁ ବୁଝାଇ ଦେଇ ସେଠାରୁ ଯିବା ପରେ ନନ୍ଦରାଜାଙ୍କ ମନରୁ ସମସ୍ତ ଭ୍ରାନ୍ତି ଦୂର ହେଲା । ସେ ଆନନ୍ଦ ମନରେ ଶ୍ରୀକୃଷ୍ଣଙ୍କ କଥା ଅନୁସାରେ କାମ କଲେ । ସେ ସମଗ୍ର ଗୋପପୁରବାସୀଙ୍କୁ ନିର୍ଦ୍ଦେଶ ଦେଇ କହିଲେ କି ଯେତେ ଶୀଘ୍ର ସମ୍ଭବ ସେମାନେ ବୃନ୍ଦାବନକୁ ଯାଇ ବସତି ସ୍ଥାପନ କରିବେ ।

ନନ୍ଦରାଜାଙ୍କ ଆଦେଶ ପାଳନ ହେଲା । ସମସ୍ତେ ବୃନ୍ଦାବନ ଅଭିମୁଖେ ପ୍ରସ୍ଥାନ କଲେ ।





# ଦାନ

ବିଳାସପୁରରେ ଗୁରୁଦତ୍ତ ନାମକ ଜଣେ ଧନୀବ୍ୟକ୍ତି ଥା'ନ୍ତି । ଥରେ ସେ ରୋଗରେ ପଡ଼ି ଶଯ୍ୟାଶାୟୀ ହେଲେ । ଅନେକ ବୈଦ୍ୟ ଚେଷ୍ଟା କଲେ ମଧ୍ୟ କୌଣସି ଫଳ ହେଲା ନାହିଁ ।

ଦିନେ ସେ ବୈଦ୍ୟ ଜଗଦୀଶଙ୍କୁ ପାଖକୁ ଡାକି କହିଲେ, "ବୈଦ୍ୟରାଜ, ମୁଁ ଆଜିପର୍ଯ୍ୟନ୍ତ କୌଣସି ପୁଣ୍ୟକାର୍ଯ୍ୟ କରିନାହିଁ । ଏବେ ମୁଁ ଉପଲବ୍‌ଧି କରୁଛି, ମୃତ୍ୟୁ ପରେ ମୋର ନରକ ଭୋଗହିଁ ସାର ହେବ ।"

ବୈଦ୍ୟ ଜଗଦୀଶ ସବୁ ଶୁଣି ବୁଝିଗଲେ କି ସେଠ୍‌ଜୀ ପଶ୍ଚାତ୍ତାପରୂପକ ମାନସିକ ରୋଗରେ ଆକ୍ରାନ୍ତ । ସେ କହିଲେ, "ସେଠ୍‌ଜୀ, ଆପଣ ଚିନ୍ତା କରନ୍ତୁ ନାହିଁ । ମୁଁ ଆଜିହିଁ ଆପଣଙ୍କ ହାତରେ କୌଣସି ପୁଣ୍ୟକାର୍ଯ୍ୟ କରାଇ ନେବ । ଆପଣଙ୍କର ସମସ୍ତ ପାପ ଧୋଇଯିବ ଓ ଔଷଧ ମଧ୍ୟ କାମ କରିବ ।"

ସେହି ଗ୍ରାମରେ ରାଜୁ ନାମକ ଜଣେ ଗରିବ କୃଷୀ ଥିଲା । ତା'ର ସ୍ତ୍ରୀ ଚମ୍ପା ଅତ୍ୟନ୍ତ ପରିଶ୍ରମୀ ଥିଲା । ଦୁଇଟି ପିଲା ମଧ୍ୟ ଥା'ନ୍ତି । ରାଜୁ ମଧ୍ୟ ବହୁତ ପରିଶ୍ରମ କରୁଥାଏ । ତଥାପି ଭାଗ୍ୟ ତାଙ୍କର ଅନୁକୂଳ ନଥିଲା । ଥରେ ଧାନ ସବୁ ବରିଷାରେ ପଚିଗଲା ତ ଆଉ ଥରେ ସବୁ ଚୋର ନେଇଗଲା । ଆଉ ଥରେ ଧାନଗଦାରେ ନିଆଁ ଲାଗିଗଲା । ସେଥିଯୋଗୁ ସେ ପ୍ରତିବର୍ଷ କିଛି ନା କିଛି କରଜ କରୁଥାଏ ।

ବୈଦ୍ୟ ତାଙ୍କୁ ସେଠ୍‌ଜୀଙ୍କ ପାଖକୁ ନେଇ କହିଲେ, "ସେଠ୍‌ଜୀ, ରାଜୁ ବିଚରା ବହୁତ ଅସୁବିଧାରେ ପଡ଼ି ଅନେକ କରଜ କରିଛି । ତାକୁ କିଛି ଧନ ଦାନ ଦେଇ ପୁଣ୍ୟ ଅର୍ଜନ କରନ୍ତୁ ।"

ସେଠ୍‌ଜୀ ରାଜୁକୁ ସମଗ୍ର କରଜ ଶୁଝିବା ପାଇଁ ଟଙ୍କା ଦେବା ସଙ୍ଗେ ସଙ୍ଗେ ଆଗାମୀ ଏକ ବର୍ଷ ପାଇଁ ଖାଦ୍ୟ ଓ ଟଙ୍କା ଦେଇ ବିଦା କଲେ ।

ଗଙ୍ଗା ପ୍ରସାଦ

ଏବେ ପୁଣ୍ୟ କରିବା ଯୋଗୁ ବୈଦ୍ୟଙ୍କ ଔଷଧ କାମ କଲା ଓ ସେଠ୍‌ଜୀ ସପ୍ତାହକ ମଧ୍ୟରେ ସମ୍ପୂର୍ଣ୍ଣ ସୁସ୍ଥ ହୋଇଗଲେ । ଏ ଖବର ଚାରିଆଡ଼େ ପ୍ରଚାର ହୋଇଗଲା ।

ଲୋକମାନେ କହିଲେ, "ଆମେ ତ ଯଥା ଶକ୍ତି କିଛି ନ କିଛି ଦାନ କରୁଛୁ କିନ୍ତୁ ଏପରି ଆଶ୍ଚର୍ଯ୍ୟ ଘଟଣା ତ ଦେଖିନାହୁଁ ! ନିଶ୍ଚୟ ରାଜୁ ଭିତରେ କିଛି ଅଲୌକିକ ଶକ୍ତି ଅଛି ।"

ଏକଥା ରାଜୁ ଶୁଣିବା ପରେ ତା'ର କାମ ହେଲା ସମସ୍ତଙ୍କ ଆଗରେ ବନେଇ ଚୁନେଇ ଘଟଣା ବର୍ଣ୍ଣନା କରିବା । ଲୋକମାନେ ସବୁ ଶୁଣି ତା'ର ଅଲୌକିକ ଶକ୍ତିରେ ବିଶ୍ୱାସ କରିଗଲେ । ତେଣୁ ସମସ୍ତେ ନିଜର ବିପଦ-ଆପଦରେ ରାଜୁକୁ ଦାନ ଦେବାକୁ ଲାଗିଲେ । ରାଜୁ ତ ମହା ଖୁସି । କାମ ନ କରି ଆରାମରେ ଦିନ କଟାଉଥାଏ । କିଛି ଲୋକଙ୍କ ଭାଗ୍ୟ ଭଲ ଥିଲେ ରାଜୁର ସୁନାମ ମଧ୍ୟ ହେଉଥାଏ । ଯିଏ କିଛି ଫଳ ନ ପାଏ ଚୁପ୍ ରହିଯାଏ ! କ୍ରମେ ନିଜ ଗ୍ରାମ ଛଡ଼ା ରାଜୁ ଅନ୍ୟ ପଡ଼ୋଶୀ ଗ୍ରାମକୁ ଯାଇ ମଧ୍ୟ ନିଜ କୃତିତ୍ୱ ଶୁଣାଇ ଦାନ ସବୁ ପାଇଲା । ଦିନେ ରାଜୁର ସ୍ତ୍ରୀ ରମା ରାଜୁକୁ କହିଲା, "ଶୁଣ, ତମେ ଲୋଭବଶତଃ ଗୃହ କାମ ଛାଡ଼ି ଦାନ ନେଇ ନେଇ ଭିକାରି ହୋଇଗଲଣି । ଏସବୁ ଛାଡ଼ । ଚାଲ ପୂର୍ବପରି କାମଦାମ କରିବା ।"

"ଯେତେବେଳେ ମୁଁ କଷ୍ଟ କରୁଥିଲି କିଛି ପାଉ ନଥିଲି । ଏବେ ଯଦି ପାଉଛି ସେଥିରେ ଖରାପ କ'ଣ ?"



"ଯେତେବେଳେ ଆମର ପ୍ରକୃତରେ ସଙ୍କଟ ସମୟ ଥିଲା ସେତେବେଳେ ସେଠ୍‌ଜୀଙ୍କ ଦାନର ପୁଣ୍ୟଫଳ ଦେଖାଦେଲା । ଏବେ ଆମର କୌଣସି ବିପଦ ନାହିଁ, ତେଣୁ ଆମକୁ ଯିଏ କିଛି ଦାନ ଦେବ ସେଥିରେ କିଛି ପୁଣ୍ୟ ହେବ ନାହିଁ । ପୁଣି ସେମାନେ ଦାନ ଦେବା ବନ୍ଦ କରିଦେଲେ ଆମ ଅବସ୍ଥା କ'ଣ ହେବ ? ଏବେ ତ ବସି ବସି ପଇସା ପାଇବାର ଅଭ୍ୟାସ ରଖୁଛ, ପଇସା ସରିଗଲେ କେବଳ ଆଳସ୍ୟଟିହିଁ ରହିଯିବ ।" ଚମ୍ପା କହିଲା ।

ରାଜୁ ଚମ୍ପା କଥା ଆଦୌ କିଛି ଶୁଣିଲା ନାହିଁ । କିଛିଦିନ ପରେ ଥରେ ରାଜୁ ବେମାର ପଡ଼ିଲା । ଗ୍ରାମରେ ଇତମଧ୍ୟରେ ଏକପ୍ରକାର ପ୍ରଥା ପ୍ରଚଳନ ହୋଇଥାଏ କି ଯିଏ ବେମାର ପଡିବ ସେ ରାଜୁ କୁ କିଛି ନା କିଛି ଦାନ ଦେବ । ଏବେ ରାଜୁ ମହା ଧର୍ମସଙ୍କଟରେ ପଡି ବୈଦ୍ୟଜୀଙ୍କୁ ଡାକି ପଚାରିଲା, "ଏବେ କୁହନ୍ତୁ, ମୁଁ କାହାକୁ ଦାନ ଦେବ ?"

ବିଚରା ବୈଦ୍ୟ ମଧ୍ୟ ମହା ଅଡୁଆରେ ପଡ଼ିଲେ । କ'ଣ ଉତ୍ତର ଦେବେ ? ଚମ୍ପା ବୈଦ୍ୟଙ୍କୁ ଅନ୍ୟ ଘରକୁ ଡାକିନେଇ କହିଲା, "ଏବେ ଆପଣଙ୍କ ଯୋଗୁଁ ମୋ ସ୍ୱାମୀ ଭିକାରି ହୋଇ ଯାଇଛି । ମୁଁ ଜଣେ ଭିକାରିର ପତ୍ନୀ ଭାବରେ ସମାଜରେ ଚଳିବାକୁ ଚାହେଁ ନାହିଁ । ଏବେ ଆପଣ କିଛି ଔଷଧ ଦିଅନ୍ତୁ ଯଦ୍ୱାରା ତାଙ୍କର ହୃଦୟ ପରିବର୍ତ୍ତନ ହେବ ଓ ସେ ଆତ୍ମସମ୍ମାନ ଥିବା ଜୀବନ ବିତାଇବେ ।"



ବୈଦ୍ୟ ନିଜ କର୍ତ୍ତବ୍ୟ ଠିକ୍ କଲେ । ସେ ରାଜୁକୁ କହିଲେ, "ତୁ କାହାକୁ ଦାନ ଦେବୁ ? ତୋର ତ ନିଜର କିଛି ସମ୍ପତ୍ତି ନାହିଁ । ଦାନ କରିଦେଲେ ତ ସଙ୍ଗେ ସଙ୍ଗେ ପୁଣ୍ୟ ମିଳେ ନାହିଁ ! ତୋର ଅର୍ଥସଙ୍କଟ ସମୟରେ ସେଠ୍‌ଜୀ ଦାନ ଦେବାରୁ ତାଙ୍କର ପୁଣ୍ୟ ହେଲା । ସେତେବେଳେ ତୁ ପରିଶ୍ରମ କରି ଧନ ଅର୍ଜନ କରୁଥିବାରୁ ପୁଣ୍ୟବାନ୍ ଥିଲୁ । ତେଣୁ ସେଠ୍‌ଜୀ ତୋତେ ଦାନ ଦେଇ ତୋ ପୁଣ୍ୟରୁ କିଛି ନେଲେ । ଏବେ ସବୁବେଳେ ଦାନ ନେଇ ନେଇ ତୋର ସବୁ ପୁଣ୍ୟ ନଷ୍ଟ ହୋଇଯାଇଛି ବୋଲି ତୁ ଅସୁସ୍ଥ ହୋଇ ପଡ଼ୁଛୁ । ମୁଁ ତୋତେ ଔଷଧ ଦେଇ ଭଲ କରିପାରିବି । କିନ୍ତୁ ଅନାବଶ୍ୟକ ଦାନ ଗ୍ରହଣ କରିଥିବା ଯୋଗୁ ଔଷଧ ଭଲ କାମ କରିବ ନାହିଁ । ଏବେ ତୁ ଦାନ ଗ୍ରହଣ ନ କରିବା ପାଇଁ ବଚନବଦ୍ଧ ହେଲେ ଯାଇ ମୁଁ ଚିକିତ୍ସା କରିବି ।"

"ଦାନର ପୁଣ୍ୟଫଳ ମହାନ୍ । ଯିଏ ଦାନ ଦିଏ ସେ ବିଶ୍ୱାସ କରେ ଯେ ଦାନ ଦେବା ଦ୍ୱାରା ଗ୍ରହୀତାର ଉପକାର ହୁଏ ଓ ଦାନ ଦେବାବାଲା ଅନ୍ୟକୁ ସାହାଯ୍ୟ କରିଥିବାରୁ ନିଜ ମଢରେ ଆତ୍ମସନ୍ତୋଷ ଲାଭ କରେ । କିନ୍ତୁ ତୁ ଦାନର ଅର୍ଥ ଠିକ୍ ଭାବରେ ବୁଝିପାରିଲୁ ନାହିଁ । ଓଲଟା ନିଜର ସ୍ୱାର୍ଥ ସିଦ୍ଧି ପାଇଁ ସବୁ କଲୁ । ସେଥିପାଇଁ ତୁ ପୁଣ୍ୟରୁ ବଞ୍ଚିତ ହେଲୁ ।" ବୈଦ୍ୟରାଜ ପୁଣି କହିଲେ ।

ବୈଦ୍ୟଙ୍କ କଥା ଶୁଣି ରାଜୁ ନିଜର ଭୁଲ୍ ବୁଝିପାରିଲା । ଏବେ ସେ ଦାନ ନ ନେଇ ନିଜେ ପରିଶ୍ରମ କରି ପେଟ ପୋଷିବା ପାଇଁ ମନେ ମନେ ଠିକ୍ କଲା ।

ବୈଦ୍ୟଙ୍କ ଔଷଧରେ ରାଜୁ ଶିଘ୍ର ସୁସ୍ଥ ହୋଇଗଲା । ତା'ପରେ ମୋ ସହିତ ମିଶି ଏକାଠି କାମ କରି ବହୁତ ରୋଜଗାର କରି ଆନନ୍ଦରେ ରହିଲା ।





# ବିଷବୃକ୍ଷ

ପାଟଣାଗଡ଼ ରାଜ୍ୟରେ ମହାରାଜା ବିଷ୍ଣୁବର୍ଦ୍ଧନ ଶାସନ କରୁଥା'ନ୍ତି । ତାଙ୍କର ଏକମାତ୍ର ପୁତ୍ର ହେଲେ କୁମାର ରାଜବର୍ଦ୍ଧନ । ସେ ରାଜ୍ୟକାର୍ଯ୍ୟରେ ସର୍ବଦା ବୃଦ୍ଧ ପିତାଙ୍କର ସହାୟତା କରୁଥା'ନ୍ତି । ଥରେ ରାଜା କୁମାରଙ୍କୁ ତାଙ୍କ ରାଜବଂଶର ଓ ରାଜ୍ୟର ଇତିହାସ ପଢ଼ି ଶୁଣାଉଥା'ନ୍ତି । ସେଥିରେ ଲେଖା ଅଛି, "ରାଜ୍ୟର ଉତ୍ତର ଦିଗରେ ଥିବା ବନ ମଧ୍ୟରେ ଗୋଟିଏ ବିଷବୃକ୍ଷ ଅଛି । ତା'ର ବିଶେଷତ୍ୱ ଏହି ଯେ ତା' ମୂଳରେ କେହି ଛିଡ଼ାହୋଇ କିଛି କାମନା କଲେ ତାହା ମିଳିଯିବ । ପୂର୍ବଜ ରାଜାମାନେ ସେହି ବୃକ୍ଷର ସହାୟତାରେ ରାଜ୍ୟର ଅନେକ ସମସ୍ୟା ସମାଧାନ କରିଛନ୍ତି ।"

ରାଜବର୍ଦ୍ଧନ ପୋଥିରୁ ସେଇଟା ପଢ଼ିବା ପରେ ଉତ୍ତର ପଟ ବନକୁ ଯାଇ ବିଷବୃକ୍ଷକୁ ଖୋଜିଲେ । ଦଶଦିନ କାଳ ଅକ୍ଳାନ୍ତ ପରିଶ୍ରମ କରି ଶେଷକୁ ପାଇଲେ । ତା'ପରେ ମନେ ମନେ ନାନା ପ୍ରକାର ଯୋଜନା ପ୍ରସ୍ତୁତ କଲେ କିପରି ବିଷବୃକ୍ଷର ଶକ୍ତିକୁ ରାଜକାର୍ଯ୍ୟରେ ଓ ଲୋକହିତକର କାର୍ଯ୍ୟରେ ଉପଯୋଗ କରିପାରିବେ ।

ଦିନେ ସେ ବିଷବୃକ୍ଷ ବିଷୟରେ ବସି ଭାବୁଥା'ନ୍ତି ଏଇ ସମୟରେ ସେନାପତିଙ୍କ ପତ୍ନୀ ଶାନ୍ତି ଆସି ସେଠାରେ ପହଞ୍ଚି ରାଜବର୍ଦ୍ଧନଙ୍କୁ ନମସ୍କାର କରି କହିଲେ, "ଯୁବରାଜ, ମୋର ସ୍ୱାମୀଙ୍କୁ ଆପଣ ସୀମାନ୍ତ ଅଞ୍ଚଳକୁ ପଠାଇଛନ୍ତି, ମୋ ପିଲାମାନେ ଦୁଇଦିନ ହେବ ଖାଇ ନାହାନ୍ତି କାରଣ ସର୍ବଦା ସେମାନେ ପିତାଙ୍କ ସହ ଭୋଜନ କରନ୍ତି ।"

ରାଜବର୍ଦ୍ଧନ ବିଷବୃକ୍ଷ କଥା ମନେ ପକାଇ କହିଲେ, "ଆଚ୍ଛା, ଆଚ୍ଛା, ସେ ଆଜିହିଁ ଆସିଯିବେ; ତମେ ଘରକୁ ଯାଅ ।"



ତା'ପରେ ଯୁବରାଜ ରାଜବର୍ଦ୍ଧନ ବଟବୃକ୍ଷ ସାହାଯ୍ୟରେ ସେନାପତି ରୂପ ନେଇ ତାଙ୍କ ଘରକୁ ଗଲେ । ପିତାଙ୍କୁ ଦେଖି ପିଲାମାନେ ଅତି ଆନନ୍ଦିତ ହୋଇ ନାଚିଲେ, ଡେଇଁଲେ । ପତ୍ନୀ ଶାନ୍ତି ଖୁସି ହୋଇ ନିଜେ ରାନ୍ଧି ଖାଇବାକୁ ଦେଲେ । ସେନାପତିରୂପୀ ଯୁବରାଜ ପିଲାମାନଙ୍କୁ କୋଳରେ ବସାଇ ଖୁଆଇଲେ । ଠିକ୍ ଏହି ସମୟରେ ସେଠାରେ ଆସି ପହଞ୍ଚିଲେ ସେନାପତି । ସେ ଦେଖିଲେ ତାଙ୍କର ପରି ଅବିକଳ ଦେଖିବାକୁ ଜଣେ ବ୍ୟକ୍ତି ତାଙ୍କର ଆସନରେ ବସି ତାଙ୍କର ପିଲାଙ୍କୁ ଖୁଆଇ ଦେଉଛନ୍ତି । ତାଙ୍କର ମଥା ଗରମ ହୋଇଗଲା । ସେ ଗୋଟାଏ ବାଡ଼ି ଉଠାଇ ନେଇ ଯୁବରାଜଙ୍କୁ ପ୍ରହାର କରୁ କରୁ କହିଲେ, "ଆରେ ଦୁଷ୍ଟ ତୁ କିଏ ? ଚାଣ୍ଡିକ ନା ମାୟାବୀ ? ତୋର ଏତେ ସାହସ ଯେ ତୁ ମୋ ରୂପ ନେଇ ମୋର ଘରେ ବସି ମୋ ସ୍ତ୍ରୀର ସେବା ପାଉଛୁ ଓ ପିଲାମାନଙ୍କୁ ଧରି ଚକଟୁଛୁ ? କି ଆଶ୍ଚର୍ଯ୍ୟ ? କହ କିଏ ତୁ ?" ଏତିକି କହୁ କହୁ ସେ ସେନାପତିରୂପୀ ଯୁବରାଜଙ୍କୁ ବହୁତ ପିଟି ପକାଇଲେ ।

ଏପରି ଅଚାନକ ଭାବରେ ପ୍ରହାର ଖାଇ ଯୁବରାଜ ସେଇଠି ଟଳି ପଡ଼ୁ ପଡ଼ୁ ସବୁକଥା ଖୋଲି ସେନାପତିଙ୍କୁ କହିଲେ । ସଂପୂର୍ଣ୍ଣ ସୁସ୍ଥ ହେବାକୁ ତାଙ୍କୁ ଦଶଦିନ ଲାଗିଲା ।

କିଛିଦିନ ପରେ; ଦିନେ ଯୁବରାଜ ଛଦ୍ମବେଶରେ ରାଜ୍ୟର ହାଲ ବୁଝିବାପାଇଁ ରାତିରେ ବାହାରିଥା'ନ୍ତି । ଯାଉ ଯାଉ ଗୋଟିଏ ଘର ମଧ୍ୟରୁ ସ୍ୱାମୀ ସ୍ତ୍ରୀଙ୍କର କଳି ଶୁଣିପାରିଲେ । ସେ କାନ୍ଥ ପାଖରେ କିଛି ସମୟ ଠିଆ ହୋଇ ସେମାନଙ୍କ କଳି ଓ କଥାବାର୍ତ୍ତା ଶୁଣି ସେମାନଙ୍କ କଳିର କାରଣ ବୁଝିବାକୁ ଚେଷ୍ଟା କଲେ ।

ସ୍ତ୍ରୀ ରାଗିଯାଇ କହୁଥାଏ, "ଆମ କମଳା ସାଙ୍ଗର ସବୁ ଝିଅ ବାହା ହୋଇ ଗଲେଣି । ତମେ କ'ଣ ଆମ ଝିଅକୁ ଆଜୀବନ କୁମାରୀ ରଖିବ ?"

"ଆରେ ତମେ ରାଗୁଛ କାହିଁକି ? ବହାଘର ଆସିଯାଉ ଦେଖିବ ଏକାଦିନକେ ବାହାଘର ଶେଷ ।" ସ୍ୱାମୀ କହୁଛି ।



ଯୁବରାଜ ସେଠାରୁ ଆହୁରି ଆଗକୁ ଗଲେ, ଯାଉ ଯାଉ ଗୋଟିଏ ଘର ଭିତରୁ କିଛି କଥାବାର୍ତ୍ତା ହେବାର ଶବ୍ଦ ଶୁଣିପାରିଲେ । ଏହା ଥିଲା ଏକ ବ୍ୟବସାୟୀର ଘର । ବ୍ୟବସାୟୀକୁ ତା'ର ପୁତ୍ର କହୁଥାଏ, "ଯେତେଦିନ ପର୍ଯ୍ୟନ୍ତ ବିହାରୀ ନ ଆସିଛି ଆମେ କ'ଣ ହାତଗୋଡ଼ ବାନ୍ଧ କରି ବସିବା ?"

"ତା'ର ଫେରି ଆସିବା ଉପରେ ଆମର ସବୁ ସମାଧାନ ନିର୍ଭର କରୁଛି—କିନ୍ତୁ ସେ ଯେ ଫେରିବ ସେ ବିଶ୍ୱାସ ଆଉ ମୋର ନାହିଁ ।" ବ୍ୟବସାୟୀ କହିଲା ।

ଯୁବରାଜ ଭାବିଲେ, "ଦୁଇଟି ପରିବାର ବିହାରୀ ଉପରେ ନିର୍ଭର କରି ଅପେକ୍ଷାରେ ଅଛନ୍ତି, ମୁଁ ବିଷବୃକ୍ଷର ସହାୟତାରେ ବିହାରୀ ରୂପ ଧରି ତ ସେମାନଙ୍କୁ ସାହାଯ୍ୟ କରି ପାରିବି ।"

ବିହାରୀ ଥିଲା ଜଣେ ବଣିକ । ସେ ବାଣିଜ୍ୟ କରିବା ପାଇଁ ଚନ୍ଦ୍ରଭାନୁଠାରୁ ଦଶହଜାର ଟଙ୍କା କରଜ ନେଇ ବାଣିଜ୍ୟ ଆରମ୍ଭ କଲା । ଚନ୍ଦ୍ରଭାନୁ ଟଙ୍କା ଗୁଡ଼ିକ ଝିଅ କମଳାର ବିବାହ ପାଇଁ ସଞ୍ଚୟ କରି ରଖିଥିଲା । ବିହାରୀ ସମୁଦ୍ରରେ ଯିବା ସମୟରେ ଝଡ଼ ହେଲା, ବହୁ ଜିନିଷ କ୍ଷତି ହେବାରୁ ସେ ଘରକୁ ନ ଫେରି ସେହି ବିଦେଶରେହିଁ ଛୋଟ ବ୍ୟବସାୟ କରି ଚଳୁଛି ।

ଯୁବରାଜ ଏସବୁ କଥା କିଛି ଜାଣି ନଥିଲେ । ସେ ବିହାରୀର ରୂପ ଧରି ବ୍ୟବସାୟୀର ଘରକୁ ଗଲେ ଆଉ ତାକୁ ଦେଖି ଅତି ମଧୁର ଭାବରେ କହିଲେ, "ଭାଇ, ତମର ସବୁ କୁଶଳ ତ ?"

ବିହାରୀକୁ ଚିହ୍ନିବା ମାତ୍ରେ ବାପ ପୁଅ ଦୁହେଁ ତାକୁ ଘର ଭିତରକୁ ଟାଣି ନେଇ ବହୁତ ପିଟିଲେ । ସେମାନେ କହିଲେ, "ଆମଠାରୁ ସବୁ ଜିନିଷ ନେବାବେଳକୁ ନେଇଗଲ, ଏବେ ଆମେ କି କଷ୍ଟରେ ଚଳୁଛୁ ।" ତା'ପରେ ବ୍ୟବସାୟୀର ପୁଅ ଯାଇ ଚନ୍ଦ୍ରଭାନୁକୁ ଡାକି ଆଣିଲା । ଚନ୍ଦ୍ରଭାନୁ ମଧ୍ୟ ପହଞ୍ଚିଯାଇ ତାକୁ ଗୁଡ଼ାଏ ଗାଳି ଦେଇ କହିଲା, "ଟଙ୍କା ନେବାବେଳେ ତ ନେଲ, ଏବେ ମୁଁ ସେଇ ଟଙ୍କା ଆଶାରେ ବସି ରହିଛି ମୋ ଝିଅ ବାହା ହୋଇ




ପାରୁନାହାଁ । ଏବେ ରାଜାଙ୍କ ପାଖକୁ ଚାଲ ସେଇଠାରେ ଏହାର ବିଚାର ହେବ ।"

ସେମାନେ ସମସ୍ତେ ଯାଇ ରାଜ-ନଗରରେ ପହଞ୍ଚିଲେ । ମନ୍ତ୍ରୀ ସେମାନଙ୍କୁ କହିଲେ, "ଦେଖ, ଏବେ ମହାରାଜ ଅସୁସ୍ଥ । ଯୁବରାଜ କୁଆଡ଼େ ବାହାରକୁ ଯାଇଛନ୍ତି । ମୁଁ ଏହି ଅପରାଧୀକୁ କାରାଗାର ମଧ୍ୟରେ ରଖୁଛି ପରେ ବିଚାର ହେବ ।"

ସେମାନେ ବିହାରୀ ରୂପୀ ଯୁବରାଜଙ୍କୁ କାରାଗାରରେ ରଖାଇ ନିଜ ନିଜ ଘରକୁ ଫେରିଗଲେ । ତା'ପରେ ଯୁବରାଜ ମନ୍ତ୍ରୀଙ୍କୁ ଗୋପନରେ ଡକାଇ ସବୁକଥା କହି ମୁକ୍ତ ପାଇଲେ ।

କିଛିଦିନ ପରେ ରାଜମହଲରେ ଚୋରି ହେବାକୁ ଲାଗିଲା । ବାରମ୍ବାର ଚୋର ପଶି ନାନା ରକମ ଜିନିଷ ଚୋରି କଲା । ମହାରାଣୀଙ୍କ ଅଳଙ୍କାର ବାକ୍ସ ଚୋରି ହୋଇଗଲା । ଧନାଗାରରୁ ବହୁ ସ୍ୱର୍ଣ୍ଣମୁଦ୍ରା ମଧ୍ୟ ଚୋରି ହୋଇଗଲା । ଚୋରକୁ ଧରିବାକୁ ବହୁ ଚେଷ୍ଟା କରି ସମସ୍ତେ ବିଫଳ ହେଲେ । ତା'ପରେ ଯୁବରାଜ ଦିନେ କୁକୁର ରୂପ ଧରି ନଗର ଦ୍ୱାରରେ ଜଗି ରହିଲେ । କିଛି ସମୟ ପରେ ଡାକୁ ସେଇ ଦ୍ୱାର ଦେଇ ପଦାକୁ ଆସିଲା । କୁକୁର ଭୁକିବାକୁ ଲାଗିବାରୁ ଡାକୁ ତା' ଉପରେ ଟେକା ପଥର ଫୋପାଡି କୌଣସି ମତେ ଦୌଡ଼ି ପଳାଇଲା । କୁକୁର ତା' ପଛେ ପଛେ ଅନ୍ଧାରରେ ଦୌଡ଼ିଥାଏ । ଶେଷରେ ଡାକୁ ସେନାପତିଙ୍କ ଘର ପାଖରେ ପହଞ୍ଚି ସେନାପତି ରୂପ ଧରି ନିଜ ଘରକୁ ଗଲେ । ଏସବୁ ଦେଖି ଯୁବରାଜ ଫେରି ଆସିଲେ । ସେ ଜାଣିପାରିଲେ ଯେ ସେନାପତି ବିଷବୃକ୍ଷ ବିଷୟରେ ଜାଣିଲା ପରେ ଏପରି ସବୁ କରୁଛି ।

ପରଦିନ ଯୁବରାଜ ସେନାପତିଙ୍କୁ ବନ୍ଦୀ କଲେ ଓ ପିତାଙ୍କୁ ସବୁକଥା ଶୁଣାଇଲେ । ବୃଦ୍ଧ ରାଜା ଯୁବରାଜଙ୍କୁ କହିଲେ, "ପୁଅ, ତୁ ସେ ବିଷବୃକ୍ଷ କଟାଇ ଦେ, ତାହା ନାନାଦି ଅନର୍ଥର ମୂଳ । ଲୋଭରେ ପଡି ଲୋକେ ସେ ଶକ୍ତିର ଅପବ୍ୟବହାର କରିବେ ଓ ତୋ ଜୀବନ ଉପରେ ବାରମ୍ବାର ବିପଦ ଆସିବ ।"

"ବାବା, ସେ ବୃକ୍ଷ ଅନେକଦିନର ଓ ଏକ ଅଲୌକିକ ଶକ୍ତି ଧରି ରହିଛି । ଆମର ପୂର୍ବପୁରୁଷମାନେ ସେହି ବୃକ୍ଷର ସହାୟତାରେ ବହୁ କାର୍ଯ୍ୟ କରିଛନ୍ତି । ତେଣୁ ତାକୁ କଟାଇ ନ ଦେଇ ସେଠାରେ ପ୍ରହରୀ ଓ ଜଗୁଆଳୀ ନିଯୁକ୍ତ କରିବା ଯେପରି କେହି ସେ ଶକ୍ତି ଉପରେ ଲାଭ ଉଠାଇ ପାରିବେ ନାହିଁ ।" ଯୁବରାଜ କହିଲେ ।



ଯୁବରାଜଙ୍କ କଥା ଅନୁସାରେ ପ୍ରହରୀମାନେ ବୃକ୍ଷକୁ ଜଗି ରହିଲେ ।

କିଛିଦିନ ପରେ ମହାରାଣୀ ଅସୁସ୍ଥ ହୋଇ ପଡ଼ିଲେ । ବୈଦ୍ୟମାନେ ପରୀକ୍ଷା କରି କହିଲେ ରାଣୀଙ୍କ ଔଷଧ ପାଇଁ ଗୋଟିଏ ଜଙ୍ଗଲୀ ଗଛ ଦରକାର । ସେଇଟା କେବଳ କାଠୁରିଆ ଭେଲ ଜାଣେ । ଭେଲକୁ ଖୋଜି ଖୋଜି ମିଳିଲା ନାହିଁ । ଯୁବରାଜ ଦିନେ ବିଷବୃକ୍ଷ ସାହାଯ୍ୟରେ ଭେଲର ରୂପ ନେଇ ବୈଦ୍ୟଙ୍କ ପାଖକୁ ଗଲେ ।

ଭେଲକୁ ଦେଖି ବୈଦ୍ୟରାଜ କହିଲେ, "ଭେଲ ତମେ ଦେବଜନର ବୃକ୍ଷ ଚିହ୍ନିଛ । ଜଙ୍ଗଲରୁ ଯାଇ ଶିଘ୍ର ନେଇଆସ ।"

ଇତିମଧ୍ୟରେ ଆଉ ଗୋଟିଏ ଘଟଣା ଘଟିଗଲା । ମନ୍ତ୍ରୀ ବିଷବୃକ୍ଷର ମହିମା ଜାଣିବା ପରଠାରୁ ନିଜେ କିପରି ରାଜା ହେବେ ସେଇଆ ଚିନ୍ତା ସବୁବେଳେ ମନେ ମନେ କରୁଥା'ନ୍ତି । ସୁଯୋଗ ଦେଖି ଦିନେ ସେ ପ୍ରହରୀମାନଙ୍କୁ କିଛି ଧନ ଦେଇ ବିଷବୃକ୍ଷ ପାଖକୁ ଯାଇ ନିଜେ ରାଜାର ରୂପ ଧାରଣ କଲେ ଓ ପ୍ରହରୀମାନଙ୍କୁ କହିଲେ, "ଏ ବିଷବୃକ୍ଷକୁ କାଟିଦିଅ ।"

ସେମାନେ କହିଲେ, "କ୍ଷମା କରନ୍ତୁ, ଆମେ ଏସବୁ କାମ କରିପାରିବୁ ନାହିଁ ।"

"ତାହେଲେ ଗୋଟାଏ କାମ କର ।" ଜଣେ କାଠୁରିଆକୁ ଡ଼ାକ ସେ କାଟିଦେବ ।" ରାଜାରୂପୀ ମନ୍ତ୍ରୀ କହିଲେ ।

ପ୍ରହରୀମାନେ ଯାଇ ଭେଲ କାଠୁରିଆ ରୂପରେ ଥିବା ଯୁବରାଜଙ୍କୁହିଁ ମନ୍ତ୍ରୀଙ୍କ ପାଖକୁ ନେଇ ଆସିଲେ । ସେ ସବୁ ଶୁଣି ଗଛ କାଟିବାକୁ ମନାକଲା ।

ସଙ୍ଗେ ସଙ୍ଗେ ରାଜାରୂପୀ ମନ୍ତ୍ରୀ ଗର୍ଜି ଉଠି କହିଲେ, "କ'ଣ ତୁ ମୋର ଆଦେଶ ପାଳନ କରିବୁ ନାହିଁ ? ତୋର ଏତେ ସାହସ ? ଯାଅ ପ୍ରହରୀଗଣ ଏ କାଠୁରିଆକୁ ଚାବୁକରେ ଖୁବ୍ ପିଟ ।"

ସେମାନେ ପିଟିବାକୁ ଯିବାରୁ କାଠୁରିଆରୂପୀ ଯୁବରାଜ ଗଛକୁ କାଟିବାକୁ ଆରମ୍ଭ କଲେ । କିଛି ସମୟ ମଧ୍ୟରେ ଗଛ ଡାଳ ସୁଦ୍ଧା ଖଣ୍ଡ ଖଣ୍ଡ କରି ସେ କାଟି ପକାଇଲେ । ପ୍ରହରୀମାନେ ତସ କାଠଗୁଡ଼ିକ ନିଆଁ ଲଗାଇ ଜାଳିଦେଲେ । କାଠଗୁଡ଼ିକ ଜଳିଯିବା ମାତ୍ରେ ମନ୍ତ୍ରୀ ଓ ଯୁବରାଜ ନିଜ ରୂପ ଫେରି ପାଇଲେ । ପ୍ରହରୀମାନେ ଯୁବରାଜଙ୍କ ପାଦରେ ପଡ଼ି କ୍ଷମା ମାଗିଲେ ।

ତା'ପରେ ସେ ମନ୍ତ୍ରୀଙ୍କୁ ବନ୍ଦୀ କରି ରାଜନଅରକୁ ଫେରି ଆସି ରାଜାଙ୍କୁ ସବୁକଥା କହିଲେ । ରାଜା ସବୁ ଶୁଣି କହିଲେ, "ପୁତ୍ର, ଏସବୁ ବିପଦର କାରଣ ସେସବୁ ପୋଥି । ସେଗୁଡ଼ିକ ଲୁଚାଇ ରଖି ଦେ । ବିଷବୃକ୍ଷ କଥା ହୋଇଗଲା, ବିପଦ ଟଳିଲା । ଏବେ ସେହି କାଠୁରିଆକୁ ଖୋଜି ଆଣିବାର ବନ୍ଦୋବସ୍ତ କର । ଔଷଧ ମିଳିଲେ ବୈଦ୍ୟମାନେ ତୋ ମା'ର ଚିକିତ୍ସା କରିବେ ।"

ଯୁବରାଜ ନିଜ ଅଭିଜ୍ଞତାରୁ ଜାଣିଥିଲେ ଯେ ଉପକାର କରିବାକୁ ଯାଇ ଯେତେଥର ସେ ବିଷବୃକ୍ଷର ସହାୟତାରେ ରୂପ ବଦଳାଇଛନ୍ତି ସେତେଥର ବହୁତ କଷ୍ଟ ପାଇଛନ୍ତି । ତଥାପି ମନ୍ତ୍ରୀଙ୍କର ଅସଲ ରୂପ ସେ ଜାଣି ପାରିଛନ୍ତି । ମନ୍ତ୍ରୀଙ୍କୁ ଓ ସେନାପତିଙ୍କୁ ବନ୍ଦୀ କରି ସେ ନୂତନ ମନ୍ତ୍ରୀ ଓ ନୂତନ ସେନାପତି ବାଛି ସେମାନଙ୍କୁ କାର୍ଯ୍ୟଭାର ସବୁ ସମର୍ପି ଦେଲେ । ତା'ପରେ ନିଜ ବଳ, ଶକ୍ତି ଓ ପରାକ୍ରମ ଉପରେ ଭରସା ରଖି, ଭଗବାନଙ୍କର କୃପା ପ୍ରାର୍ଥନା କରି ସେ ରାଜ୍ୟଭାର ଗ୍ରହଣ କଲେ ଓ ଉତ୍ତମ ଶାସକ ଭାବରେ ଲୋକପ୍ରିୟ ହୋଇ ଉଠିଲେ ।






# ବାନର କୃତ୍ତ

ଗୋଟିଏ ଗ୍ରାମରେ ସୋମୁ ନାମକ ଏକ ଗରିବ ବୃଦ୍ଧ ଚାଷୀ ଥାଏ । ବଣରୁ ଘାସ କାଟି ବିକି ପେଟ ପୋଷୁଥାଏ । ତା’ ସ୍ତ୍ରୀ ଶୀଘ୍ର ଦିନେ ବୁଢ଼ାକୁ ଏକ ଛିଣ୍ଡାକନାର ଥଳୀ ଦେଲା । ବୁଢ଼ା ବଣକୁ ଯାଇ ଥଳୀଟି ବୃକ୍ଷ ଶାଖାରେ ଟଙ୍ଗାଇ ଦେଇ ଘାସ କାଟିବାକୁ ଗଲା । ଅଳ୍ପ ସମୟ ପରେ ନାନା ପ୍ରକାର ଶବ୍ଦ ଶୁଣି ସେ ଉପରକୁ ଚାହିଁ ଦେଖେ ତ ଦଳେ ମାଙ୍କଡ଼ ତା’ ଥଳୀଟିକୁ ଚିରି ଖଣ୍ଡ ଖଣ୍ଡ କରି ପକାଉଛନ୍ତି, ସେ କିଛି ନ କହି ଚୁପ୍‌ଚାପ ଗୋଟିଏ ଗଛକୁ ଆଉଜି ବସିଥାଏ । ଦେଖିଲେ ମନେହେବ ଯେପରି ଏକ ପଥରମୂର୍ତ୍ତି । କିଛି ସମୟ ଡିଆଁ ଡେଇଁ କରିବା ପରେ ମାଙ୍କଡ଼ମାନେ ଦେଖିଲେ ସୋମୁ ହଲଚଲ ହେଉନାହିଁ । ତେଣୁ ସେମାନେ ତାକୁ ଏକ ମୂର୍ତ୍ତି ଭାବି ଟେକି ଟେକି ନେଇ ଏକ ଭଙ୍ଗା ମନ୍ଦିରର ପାହାଚ ଉପରେ ବସାଇ ଦେଇ କୁଆଡ଼େ ଚାଲିଗଲେ । ସୋମୁ ସେମିତି ସେଇଠି ବସିଥାଏ । କିଛି ସମୟ ପରେ ସେମାନେ ହାତ ମୁଠାରେ ଟଙ୍କା ସବୁ ଧରି ଆସି ପହଞ୍ଚିଲେ ଓ ସୋମୁ ପାଖରେ ସେଗୁଡ଼ିକ ବାଣ୍ଟି ଦେଇ ଚାଲିଗଲେ ।

ବୁଢ଼ା ସୋମୁ ଆଖି ଖୋଲି ସବୁ ଦେଖିଲା ଓ ବୁଝିଗଲା ଯେ ମନ୍ଦିରକୁ ଆସୁଥିବା ଲୋକମାନଙ୍କଠାରୁ ପଇସା ସବୁ ନେଇ ମାଙ୍କଡ଼ମାନେ ଏକ ସୁରକ୍ଷିତ ସ୍ଥାନରେ ରଖିଥିଲେ । ହଠାତ୍ କ’ଣ ଇଚ୍ଛା ହୋଇଛି ଆଣି ଫିଙ୍ଗି ଦେଇ ପଳେଇଛନ୍ତି । ସୋମୁ ଖୁବ୍ ଖୁସି ହୋଇ ବହୁତ ହସିଲା । ତା’ର ଆଜି ଭାଗ୍ୟରେ ହଠାତ୍ ଏତେ ଗୁଡ଼ାଏ ପଇସା ମିଳିଗଲା । ସେ ପଇସାତକ ଧରି ହାଟକୁ ଯାଇ ନିଜ ପାଇଁ ଓ ତା’ ସ୍ତ୍ରୀ ପାଇଁ ନୂଆ ଲୁଗା କିଣିଲା ଓ ଅବଶିଷ୍ଟ ପଇସା ପତ୍ନୀ ହାତରେ ଧରାଇ

ଦେଲ ବଜାରରୁ କିଛି ଜିନିଷ ଆଣି ମିଷ୍ଟାନ୍ନ ବନାଇବାକୁ ।

ସ୍ୱାମୀ, ସ୍ତ୍ରୀ, ମାଙ୍କଡ଼ଙ୍କ ଦୟାରୁ ନୂଆ ଲୁଗା ପିନ୍ଧି ଆରାମରେ ମିଷ୍ଟାନ୍ନ ଖାଉଛନ୍ତି ତାଙ୍କ ପଡ଼ୋଶୀ ଘରର ସ୍ତ୍ରୀ କମଳା ଆସି ପହଞ୍ଚିଲା । ସେ ଆଶ୍ଚର୍ଯ୍ୟ ହୋଇ କହିଲା, "ଆଜି କଥା କ'ଣ କି ? ଦୁହେଁ ନୂଆ ଲୁଗା ପିନ୍ଧି ବସି ମିଷ୍ଟାନ୍ନ ଖାଉଛ । ଗୌରୀ ହସି ହସି ମାଙ୍କଡ଼ମାନଙ୍କ କୀର୍ତ୍ତି ସବୁ ଗପିଲା ଓ କମଳାକୁ ମିଷ୍ଟାନ୍ନ ଖୁଆଇଲା ।

କମଳାର ଆଉ ଖାଇବାରେ ମନ ଅଛି ? ସେ ଶୀଘ୍ର ଖାଇବା ଶେଷ କରି ନିଜ ଘରକୁ ଦୌଡ଼ିଲା । ସ୍ୱାମୀକୁ ଯାଇ କହିଲା, "ତମେ ବି ସୋମୁପରି ଗୋଟିଏ ଥଳୀ ନେଇ ଜଙ୍ଗଲକୁ ଯାଅ ଓ ମାଙ୍କଡ଼ଙ୍କଠାରୁ ପଇସା ଆଣ ।"

ପରଦିନ କମଳାର ସ୍ୱାମୀ ବଟିଆ ଚଟକନାର ଥଳୀ ନେଇ ଜଙ୍ଗଲରେ ପହଞ୍ଚିଲା । ଥଳୀଟିକୁ ଗଛରେ ଲଟକାଇ ମୂର୍ତ୍ତି ପରି ଚୁପ୍ ହୋଇ ବସିଲା । କିଛି ସମୟ ପରେ ମାଙ୍କଡ଼ ଦଳ ଆସି ପୂର୍ବଦିନ ପରି ଥଳୀଟିକୁ ତଳ ପକାଇଲେ । ପୁଣି ବଟିଆକୁ ମୂର୍ତ୍ତି ବୋଲି ଭାବି ଉଠାଇ ନେଉଥିଲେ । ହଠାତ୍ ବଟିଆ ଆଖି ଖୋଲି ଅନାଇଲା । ମାଙ୍କଡ଼ମାନେ ନିଜେ ଠକିହୋଇ ଯାଇଛନ୍ତି ଭାବି ବହୁତ ରାଗିଲେ । ସେହିଠାରେ ସେମାନେ ବଟିଆକୁ ତଳେ ପକାଇ ବହୁତ ମାଡ଼ ମାରିଲେ ଓ ସାରା ଶରୀର ଆମ୍ପୁଡ଼ା ଆମ୍ପୁଡ଼ି କରି ରକ୍ତ ବୁହାଇ ଦେଲେ । ବିଚରା ବଟିଆ କୌଣସି ମତେ ନିଜ ଜୀବନ ଧରି ଘରକୁ ପଳାଇ ଆସିଲା ।

ଘରେ କମଳା ପୁରୁଣା ଲୁଗା ଛିଣ୍ଡାଇ ପକାଇଛି କନ୍ଥା ବୁଣିବ ବୋଲି । କାରଣ ନୂଆ ଲୁଗା ତ ଆସିବ ଓ ସେ ପିନ୍ଧିବ ଏଇକଥା ଭାବି ବଟିଆର ଅପେକ୍ଷାରେ ଥାଏ । କିନ୍ତୁ ବଟିଆର ରୂପ ଓ ଦୁର୍ଦ୍ଦଶା ଦେଖି ତା'ର ସମସ୍ତ କଳ୍ପନା ଧୂଳିସାତ୍ ହେଲା । ସେ ଅବାକ୍ ହୋଇ ଠିଆ ହୋଇଥାଏ ।



## ଲମ୍ବା ଦାନ୍ତ



ଆମେରିକାର ମାସାଚୁସେଟସ୍‌ର ହ୍ୱେଲଙ୍ଗ ସଂଗ୍ରହାଳୟରେ ସ୍ପର୍ମହ୍ୱେଲର ଦୁଇଟି ଦାନ୍ତ ଅଛି । ପ୍ରତ୍ୟେକର ଲମ୍ବା ଏଗାର ଇଞ୍ଚ ଓ ଓଜନ ୩.୮ କିଲୋଗ୍ରାମ ।

## ମାଛି



ଆମେ ସବୁଦିନେ ଦେଖୁଥିବା ମାଛିମାନଙ୍କ ଯୋଗୁ ବହୁତ ବଡ଼ ବଡ଼ ଭୟାନକ ରୋଗ ସବୁ ବ୍ୟାପି ଥାଏ । ହଇଜା, ଟାଇଫଏଡ଼, ଇତ୍ୟାଦି ପ୍ରାୟ ୩୦ ପ୍ରକାର ରୋଗର କାରଣ ହେଲେ ଏଇ ମାଛି ।



## ଓପୋସ

ଆମେରିକାର ଜଙ୍ଗଲରେ କଠାସ ଜାତୀୟ ଏକ ପଶୁ ଅଛନ୍ତି । ସେମାନଙ୍କୁ ଧରିବାକୁ ଚେଷ୍ଟା କଲେ ପାଖରେ ଥିଲେ ହଲଚଲ ନହୋଇ ମରିଥିବାର ଛଳନା କରି ପଡ଼ିଥିବେ ।

# ଜହ୍ନମାମୁଁ

ଆଲୋକ ଓ ଆନନ୍ଦର ମାସିକ ପତ୍ରିକା



* ଭାରତର ପ୍ରାଚୀନ କାହାଣୀମାନ ସହିତ ନୂତନ କାହାଣୀମାନର ଅପୂର୍ବ ସମନ୍ୱୟ।
* ସରଳ ଓ ସଂଯତ ଭାଷାର ପ୍ରକୃଷ୍ଟ ଉଦାହରଣ—ଜହ୍ନମାମୁଁ।
* ହାସ୍ୟରସ ସହ ମାନବିକତା ଓ ନୀତିଶିକ୍ଷାରେ ସମୃଦ୍ଧ ପତ୍ରିକା—ଜହ୍ନମାମୁଁ।
* ଜହ୍ନମାମୁଁ କେବଳ ଶିଶୁ ବା କିଶୋରମାନଙ୍କ ପତ୍ରିକା ନୁହେଁ, ପରିବାରର ସମସ୍ତେ ଏହା ଉପଭୋଗ କରନ୍ତି।
* ସାଧାରଣଜ୍ଞାନର ଭଣ୍ଡାର—ଜହ୍ନମାମୁଁ।
* ଇଂରାଜୀ ଓ ସଂସ୍କୃତ ସମେତ ତେରଗୋଟି ଭାଷାରେ ପ୍ରକାଶିତ ଏ ପତ୍ରିକା ଭାରତର ଏକତାର ପ୍ରତୀକ।

'ଜହ୍ନମାମୁଁ' ପଢ଼ନ୍ତୁ ଓ ପଢ଼ାନ୍ତୁ।

ବାର୍ଷିକ ଦେୟ : ଟ ୩୦-୦୦



'ଜହ୍ନମାମୁଁ'ର ଗ୍ରାହକ ହେବା ନିମନ୍ତେ ଆପଣଙ୍କ ପୂରା ଠିକଣା ସହ ମନିଅର୍ଡର ତଳ ଠିକଣାକୁ ପଠାନ୍ତୁ :

## ଡଲ୍‌ଟନ୍ ଏଜେନ୍‌ସିଜ୍

ଚନ୍ଦାମାମା ବିଲ୍‌ଡିଙ୍ଗ୍‌ସ୍,

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଏପ୍ରିଲ୍ ୧୯୮୮ ସଂଖ୍ୟାରେ ପ୍ରକାଶ ପାଇବ



P. V. Subramanyam



S. G. Seshagiri

★ ଉଭୟ ଫଟୋ ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଫେବ୍ରୁଆରି ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ ।
★ ପରିଚୟୋକ୍ତି ସହ ପ୍ରେରକଙ୍କର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ଡିସେମ୍ବର '୮୭ ପ୍ରତିଯୋଗିତାର ଫଳ

ପ୍ରଥମ ଫଟୋ : ଟୋପାଏ ମଧୁର ଝରେ ପୀୟୂଷ,

ଦ୍ୱିତୀୟ ଫଟୋ : ଟୋପାଏ ସ୍ନେହରେ ବଢ଼େ ହରଷ !

ପୁରସ୍କାର ବିଜୟିନୀ : ସସ୍ମିତା ରଥ, ଡାଦାମ ସାହି, ନବରଙ୍ଗପୁର

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।




Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Publi[illegible] CHANDAMAMA PUBLICATIONS, Chandama-




# CHANDAMAMA

It unfolds the glory of India—both past and present—through stories, month after month.

Spread over 64 pages teeming with colourful illustrations, the magazine presents an exciting selection of tales from mythology, legends, historical episodes, glimpses of great lives, creative stories of today and knowledge that matters.

**In 11 languages and in Sanskrit too.**

## गरजता रोमांच...
## गरजता स्वाद!

Cadbury's

**Wildlife BAR**




अब Cadbury's डेरी मिल्क के स्वाद का रोमांचकारी मज़ा लीजिए Cadbury's वाइल्ड लाइफ बार में. जंगली जानवरों के मजेदार आकार में हर बार और वो भी बारह किस्मों के आकर्षक वाइल्ड लाइफ रैपर में.

Cadbury's वाइल्ड लाइफ बार—इनका कीजिए शिकार.

Big BON-BONs from nutrine

Tasty, creamy, fruity deligh
In four delicious flavours

GREAT/NEW BON BONS
from nutrine,
*naturally!*

MILK CREAM
LEMON COCONUT
FRUITY • CHOCOMINT




nutrine

BON B N



nutrine India's largest selling sweets

Nutrine Confectionery Company Private Limited, Chittoor, A.P.

